ବୃହତ୍ ଓ ସଚିତ୍ର

# ଅବୋଲକର କାହାଣୀ



ପ୍ରକାଶକ

ଧର୍ମଗ୍ରନ୍ଥ ଷ୍ଟୋର · କଟକ-୨

ବୃହତ୍ ଓ ସଚିତ୍ର

# ଅବୋଲକରା କାହାଣୀ

## ତୃତୀୟ ଭାଗ

ଲେଖକ—ଶ୍ରୀ ଅଭୟଚରଣ ମହାନ୍ତି, କଥାଶିଳ୍ପକାର

ସ୍ୱତ୍ୱାଧିକାରୀ—ଶ୍ରୀ ବିଦ୍ୟାଧର ସାହୁ

ନୂତନ ମୁଦ୍ରଣ—୧୯୯୪

ପ୍ରକାଶକ—ଧର୍ମଗ୍ରନ୍ଥ ଷ୍ଟୋର



ପ୍ରାପ୍ତିସ୍ଥାନ—ଧର୍ମଗ୍ରନ୍ଥ ଷ୍ଟୋର

ପରିଚାଳକ—ଶ୍ରୀ ବିଦ୍ୟାଧର ସାହୁ
ଅଲିଶାବଜାର ରୋ. କଟକ-୨
ଫୋନ୍ ନଂ-୨୪୭୯୭

ମୂଲ୍ୟ—୯-୦୦ ମୂଲ୍ୟ—ନଅଟଙ୍କା ମାତ୍ର

# ଅବୋଲକରା କାହାଣୀ ତୃତୀୟ ଭାଗର

## ସୂଚୀପତ୍ର

ବିଷୟ — ପୃଷ୍ଠାଙ୍କ


୧ । ବାରଖମ୍ବ କଥା — ୧

୨ । କର୍ଣ୍ଣାଟର ଧନଶ୍ରେଷ୍ଠ ରଜା ଓ ସୁବାହୁଙ୍କ କଥା — ୭

୩ । କାଠଘୋଡ଼ା ପାଣି ପିଇବା କଥା — ୩୮

୪ । ପାରିଜାତ ଫୁଲମାନ କଥା — ୬୫

୫ । ରତ୍ନମାଳୀ କଥା — ୯୦

୬ । ଅବୁଝାମଣା ରଜା କଥା — ୧୦୧

୭ । ମୋକ୍ଷଶିଳା ଓ ମୂକ ଏନ୍ତଶାଳା କଥା — ୧୧୨


—*—

( ଏହାପରେ ଚତୁର୍ଥ ଭାଗ ପଢ଼ନ୍ତୁ )

# ବୃହତ୍ ସଚିତ୍ର

# ଅବୋଲକରା କାହାଣୀ

## ( ତୃତୀୟ ଭାଗ )

## ବାର ଖମ୍ବ କଥା

ସରସ୍ୱତୀ ମହାମାର୍ଯ୍ୟେ ବିଦ୍ୟେ କମଳ ଲୋଚନୀ ।
ମମକଣ୍ଠଂ ସଦାବସ୍ତୁ ବାକ୍ୟଦେବୀ ନମସ୍ତୁତେ ॥

ଗୋସେଇଁ ଅବୋଲକରା ଦିହେଁ ଯାଇ କାବେରୀ ନଦୀ କୂଳରେ ପହଞ୍ଚିଲେ । କାବେରୀ ନଦୀର ଜଳ ନିର୍ମଳ । କୂଳପଠା ସୁନ୍ଦର । ସେଠାରେ କପିଳ ରାଜାଙ୍କ ନିର୍ମିତ ଯାତ୍ରୀ ନିବାସଟିଏ ଅଛି । ପାଖରେ ନାନାଜାତି ଫୁଲର ବଗିଚା । ନିକଟରେ ଶିବାଳୟଟିଏ ରହିଛି । ଜାଗାଟି ପୁଣ୍ୟକାମି ଯାତ୍ରୀଙ୍କ ପାଇଁ ସବୁ ଦିଗରୁ ସୁବିଧା । ତାହା ଦେଖି ଗୋସେଇଁ କହିଲେ, ଆରେ ଅବୋଲକରା ! ଅନେକ ବାଟ ଆସି ଆସି ବଡ଼ କଷ୍ଟ ହେଲଣି । ଏହି ଯାତ୍ରୀ ନିବାସରେ କିଛିଦିନ ବିଶ୍ରାମ କରି ସୁସ୍ଥ ହୋଇ ରାମେଶ୍ୱର ଆଡ଼େ ଯିବା ।

ଗୋସେଇଁ ଏ କଥା କହିବାରୁ ଅବୋଲକରା ଖୁସି ହେଲା । ଗୋସେଇଁ କହିଲେ, ବୋଝକୁ ନେଇ ଧର୍ମଶାଳାରେ ରଖ । ମୁଁ ଟଙ୍କାଟିଏ ଦେଉଛି ନେଇଯା, ନିକଟରେ କୋଉଠି ହାଟ ବଜାର ଅଛି ପଚାରି ରୋଷେଇ ସଉଦା କିଣି ଆଣିବୁ । ଗୋସେଇଁ କଥା ଶୁଣି ଅବୋଲକରା ଟଙ୍କା ଗୋଟିଏ ନେଇ ବଜାର ଆଡ଼େ ଗଲା । କିଛିସମୟ ପରେ ଚାଉଳ, ଡାଲି, ପରିବା ନେଇ ଆସି ଅବୋଲକରା ଦୁମ୍ କରି ଥୋଇଦେଇ ବସି ରହିଲା । ଗୋସେଇଁ ନଦୀରୁ ଗୋଡ଼ୁ

ହାତ ଧୋଇ ଆସି ଦେହ ପୋଛୁ ହେଉଥାନ୍ତି । ବାଲକ ଟୋକାକୁ ଏପରି ବସିବାର ଦେଖି ପଚାରିଲେ, ଆରେ ! ପୁଣି କୋଉଠି କିଛୁ ଦେଖିଲୁ ନା କଅଣ ? ବେଳେ ବେଳେ ତୋ ମୁଣ୍ଡରେ ଏପରି ଚକ୍କର ମାରେ କାହିଁକରେ ।

ଅଟ୍‌ବାଲକର ମୁହଁ ଟେକୁ ପୋଛୁ କହିଲା, ନାହିଁ ଗୋସାଇଁ । ଚକ୍କର ମାରିବେ କାହିଁକି ? ମୁଁ ଆଜ ବଜାରରୁ ସଉଦା ଧରି ଆସିବା ବେଳେ ଦେଖିଲି ଗୋଟାଏ ଜାଗାରେ ବାରଟା ଧଳା ପଥରରେ ତିଆରି ଖମ୍ବ ରହିଛନ୍ତି । ସେଥିରେ ଏକଠାରୁ ଆରମ୍ଭ କରି ବାର-ଯାଏ ଅଙ୍କ ଖୋଳାଇ କରାଯାଇଛି । ଚାରିପାଖ ପିତଳର ରେଲିଂ ଦେଇ ଘେରା ହୋଇଛି । ଭିତରକୁ କେହି ଗାଈ ଯାଇ ପାରୁ-ନାହାନ୍ତି । ପାଖରେ କେତେଟି ଲୋକ ବସି ପଶା ଖେଳୁଚନ୍ତି । ଏ ବାରଟା ଖମ୍ବର କାରଣ କଣ ପଚାରିବାରୁ ସେମାନେ କହିଲେ, କାରଣ ଆମକୁ ଜଣାନାହିଁ । ଯୁଗ ଯୁଗ ଧରି ଖମ୍ବ ବାରଟି ଏହିପ୍ରକାର ରହିଛି । ଆଉ ଜଣେ ଜଗୁଆଳକୁ ପଚାରିବାରୁ ସେ ଝଙ୍କାଳିଆ ଗୋଟିଆଟା କହିଲା, ମୁଁ ତ ଭଣ୍ଡାର ଜଗି ରହିବା ଲୋକ, ଟଙ୍କା ଗଣି ଦେଖିବ କାହିଁକି ? ଖମ୍ବର ହାଲଚୁଲ ମୁହେଁ ମାଲୁମ ନେହିଁ । ହ୍ୟା'ପୋଟା ବଞ୍ଚୁଭାଷା ଚଲେଇ ମତଲ୍ ହେ । ମନ ହେଉଥିଲା ତାର ମୁହଁଟାକୁ ଚଟକଣାଟିଏ କଷି ଦେଇଥାନ୍ତି । ହେଲେ ଯୋଉ ଭୂଜାଳିଟା ତା ହାତରେ ଅଛି ନା, ସେଇଥିପାଇଁ ପଳେଇ ଅଇଲି ସିନା । କିନ୍ତୁ ଗୋସେଇଁ ସେଇ ବାରଟି ଖମ୍ବ କଥା ନ କହିଲେ ତ ମୁଁ ଆଉ ରହିବି ନାହିଁ । ତମେ ମୋ ଉପରେ ରାଗ ବା ଦୋଷା ହୁଅ, ଯାହା ଖୁସି ତା'ହିଁ କର । ମୁଁ ଘର ପୂଅ ଘର ଆଡ଼େ ଲେଉଟି ଯିବ ।

ତା କଥାଶୁଣି ଗୋସେଇଁ ବିରକ୍ତ ହେଲେ ମଧ୍ୟ ମୁହଁରେ ସରାଗ ଦେଖେଇ କହିଲେ, ଆରେ ! ଯେ ବାରଟି ଖମ୍ବ କଣ

ଅବକାର ସେ କଷ୍ଟଦେଲେ ସରିପିବ ? ତୁ ଗୋଡ଼ ହାତ ଧୋଇ ବସ । ଚୂଡ଼ା ଖାଉଥିବୁ, ଗପ ହେଉଥିବ । ଶୁଣୁଥିବୁ ଶୁଣୁଥିବୁ, ମୁଁ ରୋଷେଇ କରୁଥିବ । ଗୋସେଇଁଙ୍କ କଥାରେ ଅବୋଲକରା ଖୁସି ହୋଇ ଗୋଡ଼ ହାତ ଧୋଇ ଆସି ଚୂଡ଼ା ଖେବାଇଲା । ଗୋସେଇଁ ରୋଷେଇ କରୁ କରୁ କହିଲେ—

ଏ ଦେଶର ନାମ ତାମିଲ ନଦ । ଏଠାରେ ଅନେକ ଦିନ ଆଗେ ସୁବାହୁ ନାମରେ ଜଣେ ରାଜା ରାଜୁତି କରୁଥିଲେ । ତାଙ୍କ ରାଜ୍ୟର ସୀମା ବେଢ଼ଶ କୋଶ । ହେଲେ, ରାଜାଙ୍କର ପହିଲି ରାଣୀର ପିଲାପାଣ୍ଡି କିଛି ନ ହେବାରୁ ପୁରୋହିତଙ୍କ କଥାମତେ ରାଜା ଆଉ ଗୋଟିଏ ବାହାହେଲେ । ତାଙ୍କର ମଧ୍ୟ ପିଲାପିଲି ହେଲେନାହିଁ । ନାହାକ ଡାକେଇ ଜାତକ ପତ୍ର ଦେଖିବାରୁ ଜଉତିଷ କହିଲେ, ହଜୁର ! ଏ ଦୁଇଜଣଙ୍କ କୋଷ୍ଠୀରେ ସନ୍ତାନ ଯୋଗ ନାହିଁ । ବଡ଼ରାଣୀ ହେମମାଳଙ୍କ ଜାତକରେ ସପ୍ତମରେ ରବି ଶନି ପିତାପୁତ୍ର ଯୁକ୍ତ ହୋଇଅଛନ୍ତି, ଦଶମରେ ଅଛନ୍ତି ଚନ୍ଦ୍ର । ଏମାନଙ୍କୁ ବୃହସ୍ପତି ଦେଖୁଛନ୍ତି । ପୁଣି ସାନରାଣୀ ଚନ୍ଦ୍ରକଣ୍ଠଙ୍କ ଜାତକ ତୃତୀୟରେ ଶନି ରବି ରହିଛନ୍ତି । ତାଙ୍କୁ ଚନ୍ଦ୍ର ଶୁଭଦୃଷ୍ଟିରେ ଦେଖୁନାହାନ୍ତି, ତେଣୁ ଏମାନଙ୍କଠାରୁ ସନ୍ତାନ ଆଶା କରିବା ବୃଥା । ଶାସ୍ତ୍ର କହୁଛି—

ଦୁଷ୍ଟିକ୍ୟେ ମିଶ୍ରମନ୍ଦୌରପ୍ୟୁ ଭବନଗତୌ ଗୌରାଜାତେଳକଭୌମ୍ୟେ
ସୁତହେଷେ ଜଲକ୍ଷ୍ୟେ ଯଦି କୁଳ ରବିଣୌ ଗର୍ଭିଣୀ ସ୍ୟାନ୍ନନାରୀ ।

ସୁତରାଂ ବନ୍ଧ୍ୟାଯୋଗ ଯାହାଙ୍କର ଅଛି ସେମାନେ ପୁତ୍ରବତୀ ହେବେ କପରି ? ନାହାକ ଏପରି କଥା କହିବାରୁ ରାଜାଙ୍କ ମନ ଦୁଃଖ ହେଲା । ହେଲେ କରିବେ କଣ । 'ଦାସ୍ତୁ ଥିଲେ ପାଇ, ଦାସ୍ତୁ ନ ଥିଲେ ପଡ଼ିଆ ବଲଦେ ଗୋଧନ ଚରଇ' କଥାକୁ ଭାବ ରହିଥାନ୍ତି । ଏହିପରି କେତେଦିନ ବହିଗଲା । ରାଣୀମାନେ ବି ମନଦୁଃଖ

ମନରେ ମାର ରହୁଥାନ୍ତି । ଜଡ଼ିବୁଟିଠାରୁ ଔଷଧ ଆଣି ଯେତେ ଖାଇଲେଣି କାହିଁରୁ କଛୁ ହେବାକୁ ନାହିଁ ।

ଦିନେ ସୁବାହୁ ରଜା ସଭାକର ବସିଲେ, ସଭାସଦ୍ ପଣ୍ଡିତ-ମାନେ କହନ୍ତୁ କ ଉପାୟରେ ଆମର ସନ୍ତାନଟିଏ ହେବ ଓ ତା ଦ୍ୱାରା ଏ ବିଶାଳ ରାଜ୍ୟର ଦାୟିତ୍ୱ ରକ୍ଷା ହେବ । ତାଛଡ଼ା ରାଜପୁରକୁ ଯିବାକୁ ଆଉ ମନ ବଳୁ ନାହିଁ । ଘର ବାହାର ଶୂନ୍ୟ ଲାଗୁଛି । ପଣ୍ଡିତେ କହଲେ, ଲାଗିବାର କଥା । ଶାସ୍ତ୍ର କହୁଛି—

"ଅପୁତ୍ରସ୍ୟ ଗୃହଂ ଶୂନ୍ୟଂ ଦିକ୍ ଶୂନ୍ୟସ୍ତ୍ୱାନ ବାନ୍ଧବା
ମୂର୍ଖସ୍ୟ ଚ ଦିଶଃ ଶୂନ୍ୟା ସର୍ବ ଶୂନ୍ୟଂ ଦରିଦ୍ରତା ।"

ପୁଅ ଝିଅ ନଥିଲେ ଘର ଶୂନ୍ୟ, ମିତ୍ରଜନ ନ ଥିଲେ ବାସସ୍ଥଳୀ ଶୂନ୍ୟ, ଦରିଦ୍ର ହେଲେ ସବୁ ବିଷୟ ଶୂନ୍ୟ ଲାଗେ । ଏ କଥା ଶୁଣି ରାଜା କହଲେ, ଆପଣମାନେତ ଜାଣନ୍ତି । ସେଇଥିପାଇଁ କହୁଚ କ ଉପାୟ କଲେ ମୋର ସନ୍ତାନ ଲାଭ ହେବ କହନ୍ତୁ । ପଣ୍ଡିତମାନେ କହିଲେ, ବଡ଼ବଡ଼ିଆ କହିଛନ୍ତି—'ଧର୍ମେ ପୁତ୍ର ତପେ ରଜା ।' ତେଣୁ ଆପଣ ଦାନ ଧ୍ୟାନ କରନ୍ତୁ, ଯଦ ହେବାର ଥିବ ହେବ । ନ ହେଲେ ସେ'ତ କାହା ହାତର କଥା ନୁହେଁ ଯେ ହେଇଦେବ ।

ପଣ୍ଡିତମାନଙ୍କର ଏପରି ଉତ୍ତର ଦେବା ଶୁଣି ସେଇ ସଭାରେ ବସିଥିବା ସବାଗିଳା ବାହାପିଆଟାଏ କହିଲ, ଆପଣମାନେ ଦାନ ଧ୍ୟାନ ଛଳରେ ଖାଲି ନବା କଥା ଜାଣନ୍ତି ସେଥିପାଇଁ କହିଦେଲେ ।

ବାହାପିଆଙ୍କୁ ପଣ୍ଡିତେ ଅବା ପାରିବେ କାହିଁ । କଥାରେ ଅଛି—ପୁରା ପଣ୍ଡା, ବମା ଦଲଲ । ସାମ୍ନାଦକଙ୍କୁ ପାରହେବ, ବାହା-ପିଆଙ୍କୁ ପାରହେବନାହିଁ । ସେଇଠୁ ରଜା ବାହାପିଆକୁ ପଚାରଲେ,

ଆଗୁ ବାହାପିଆ କହିଲ କଣକଲେ ଆମର ପୁଅ ଜାତ ହେବ ? ଏହାଶୁଣି ସହାଗିନା ବାହାପିଆ କନକର ହସି କହିଲା, ହଜୁର ! ଇଏ କୋଉ ଅବା ବଡ଼ କଥା ଯେ ଏଇଥିପାଇଁ ଏତେ ଚିନ୍ତା । ସ୍ନାନ କରନ୍ତୁ, ଆସ୍ତୁ ଜନନନ୍ତୁ—ପୁଅ ହେଲେ ତୁମକୁ ସ୍ୱଳ୍ପର ଖଣ୍ଡେ ଦବା । ସେଇଠୁ ବାହାପିଆ କହିଲା, ମହାରାଜ ! ଆପଣତ କର୍ମ କରିବା ଆଗରୁ କାମଶାସ୍ତ୍ର ପଢ଼ିଲେ ନାହିଁ, କେଉଁଠୁ ପାଇବେ କାହୁଁ ?

ହଜୁର ହେଲେ ଖଗଜାତି ପୁରୁଷ । ରାଣୀ ଯୋଡ଼ିକ ହସ୍ତିନୀ ଓ ଚିତ୍ରିଣୀ ଜାତି । ତେଣୁ ପୁଅ ହେଉ ନାହାନ୍ତି । ହଜୁର ପଦ୍ମିନୀ ଜାତୀୟା ପୁତ୍ରଶଟିଏ ବାହା ହୁଅନ୍ତୁ । ଦେଖି କପରି ପୁଅ ନୋହିବ । ରଜା ଏହାଶୁଣି ପଚାରିଲେ ପଦ୍ମିନୀ କନ୍ୟା କୁଆଡ଼ୁ ପାଇବା ?

ବାହାପିଆଙ୍କୁ ତ ପୁରାଣ ପଣ୍ଡିତ ସବୁ ନୁହନ୍ତି । ସେ ଗୋଟିଏ ବୁଦ୍ଧି ପାଢ କହିଲ, ହଜୁର ! ଏକାକେ ପୂର୍ବ ଦିଗକୁ ଦଶଦିନ ଦକ୍ଷିଣ ଦିଗକୁ ବାରଦିନ, ପଶ୍ଚିମ ଦିଗକୁ ପନ୍ଦର ଦିନ ଓ ଉତ୍ତର ଦିଗକୁ ଅଠର ଦିନ ଚାଲି ଚାଲି ଯାଆନ୍ତୁ । ପଦ୍ମିନୀ କନ୍ୟାର ସନ୍ଧାନ ପାଇପିବେ । ତା କଥାରେ ରଜାଙ୍କ ମନରେ ବିଶ୍ୱାସ ଜନ୍ମିଲା । ତହିଁ ଆରଦିନ ଶୁଭ ଲଗ୍ନଦେଖି ରଜା ଦକ୍ଷିଣ ଦିଗକୁ ବାହାରିଲେ ।

କଥାରେ ଅଛି 'ବିଶ୍ୱାସେ ମିଳଇ କୃଷ୍ଣ ତର୍କେ ବହୁଦୂର ।' ସେହିପରି ସହାଗିନା ବାହାପିଆ କଥାରେ ବିଶ୍ୱାସ ରଖି ସୁବାହୁ ରଜା ଅନେକ ବଣ ପାହାଡ଼ ଡେଇଁ ଏକା ଏକା ଯାଉଥାନ୍ତି । ଏହି-ମତ ଦକ୍ଷିଣ ଦିଗକୁ ଦଶଦିନ ଗଲାପରେ କର୍ଣ୍ଣାଟ ଦେଶରେ ପହଞ୍ଚିଲେ । ସେ ଦେଶରେ ମାତ୍ର ଗୋଟିଏ ପୋଖରୀ ପାଖରେ ଶିବାଳୟଟିଏ ଦେଖି ରଜା ସେହି ଜାଗାରେ ବିଶ୍ରାମ କଲେ ।

ରମଣୀୟ ସରୋବର କମନୀୟ ବନ<br>ଶିବାଳୟ ଦେଖି ହୁଏ କମନୀୟ ମନ ।

ବିକଶି ବିବିଧ ଫୁଲ ବାସେ ମଧୁ ମଧୁ,
ସ୍ୱେଚ୍ଛା ଚିତ୍ତ କରି ବହି ଯାଏ ଗନ୍ଧବହ ।
ଗୁଣୁଥାଏ ମଧୁମାଛି ଅଳି ଧରେ ତାନ
ରସାଳ ଡାଳେ କୋକିଳ ଶୁଣାଏ ତା ଗାନ ।
ଏ ଶୋଭାମୟ ସରସୀ ନିକଟେ ଦେଖିଲେ
ଷୋଡ଼ଶୀ ରୂପସୀ ଏକ ଆସି ପ୍ରାତଃ କାଳେ ।
ପୂଜିବା ହେତୁ ଚଞ୍ଚଳ କରି ଦୃଢ଼ ମନ
ଫାଟୁକ କୁସୁମ ଧରି ଆସିଲା ବହନ ।
ଦେଖିଲା ଅଦୂରେ ଏକ ଯୁବକ ନୃପତି
କୁମାର ମାରକୁ ମାରେ ତାର ରୂପଛାଣି ।
ତାକୁ ଦେଖି ଶଶୀମୁଖୀ ମୋହିଦେଲା କାମେ
ଇଙ୍ଗିତରେ ପରିଚୟ ଦେଲା ସବୁ ନାମେ ।
ଫୁଲ ଏକ ଧରି ଆଗେ କର୍ଣ୍ଣରେ ଲଗାଇ
ତଦନ୍ତେ ଦନ୍ତ ଲଗାଇ ଆଣିଲା ଫେରାଇ ।
ବାହୁରେ ଲଗାଇ ପୁଣି ହୃଦେ ଲଗାଇଲା
ପାଦେ ଦେଇ ଫୁଲଟିକୁ ବାଳୀ ଚାଲିଗଲା ।

କନ୍ୟା ଏପରି ଫୁଲଟିକୁ କରି ଇଙ୍ଗିତ ଦେଇଦେବାରୁ, ଯୁବରାଜ ଇଙ୍ଗିତଟାକୁ ବୁଝି ନ ପାରି ସ୍ୱରାଜ୍ୟକୁ ଫେରିଆସିଲେ । ରାଜ୍ୟକୁ ଆସି ମନ୍ତ୍ରୀଙ୍କୁ ଡକାଇ କନ୍ୟାର ଇଙ୍ଗିତ କଥା କହିବାରୁ ମନ୍ତ୍ରୀ କହିଲେ, ସେ କନ୍ୟା ଆପଣଙ୍କୁ ପ୍ରାଣପତି ଦେବ । ସେ ଆପଣଙ୍କୁ ବାଞ୍ଛୁଅଛି । ରାଜା ପଚାରିଲେ, କପରି ବୁଝିଲ ? ମନ୍ତ୍ରୀ କହିଲେ, ସେ ଯେତେବେଳେ ଫୁଲ ଧରି ଇଙ୍ଗିତ କଲା, ଏଥିରୁ ବୁଝିବାକୁ ହେବ ସେ ରାଜକନ୍ୟା ଅନ୍ୟର କଥା ହୋଇଥିଲେ ଅଙ୍ଗଭଙ୍ଗିରେ ଇଙ୍ଗିତ କରି ଜଣାଇଥାନ୍ତା । ଫୁଲ ଧରି କାନରେ ଲଗାଇବାରୁ ବୁଝାଗଲା ସେ କର୍ଣ୍ଣାଟ ରାଜକନ୍ୟା । ଦାନ୍ତରେ ଫୁଲଟି ଥିବାରୁ ବୁଝାଗଲା ସେ

କର୍ଣ୍ଣାଟର ଦନ୍ତ ଶ୍ରେଷ୍ଠ ରାଜକନ୍ୟା । ବାହୁରେ ଗୁଣରେ ଛୁଆଁଇ ବୁଝାଇଲ ମେ ସୁବାହୁ ରାଜାଙ୍କୁ ହୃଦୟସ୍ପର୍ଶ କରିବାକୁ ଋଦ୍ଧେ । ପାଦରେ ଫୁଲଟି ଦଳନ୍ତଳ ବୁଝାଇଗଲ, ତା ନାଁ ପଦ୍ମାବତୀ । ଅତଏବ ଆପଣ ଚେଷ୍ଟା କରନ୍ତୁ, କନ୍ୟା ନିଶ୍ଚୟ ପ୍ରାପ୍ତ ହେବ ।

ମନ୍ତ୍ରୀଙ୍କ କଥା ରାଜାଙ୍କ ମନକୁ ମାନିବାରୁ ସେ ଦୂତ ପଠାଇ କର୍ଣ୍ଣାଟ ରାଜାଙ୍କୁ କନ୍ୟା ଦେବା କଥା ଜଣାଇଲେ ।

## କର୍ଣ୍ଣାଟର ଦନ୍ତଶ୍ରେଷ୍ଠ ରାଜା ଓ ସୁବାହୁଙ୍କ କଥା

ଆଗରୁ ଜାଣନ୍ତି । ଦୂତଠାରୁ ଶଠିପାଇ ଖୁସି ହୋଇ କନ୍ୟା ଦେବାକୁ ମତ ଦେଲେ । ତାପରେ ଭଲ ଦିନ ବାର ଦେଖି ସୁବାହୁ ରାଜା ପଦ୍ମାବତୀଙ୍କ ବନ୍ଧ ହୋଇ ଆସିଲେ ।

ପଦ୍ମାବତୀ ପରି ସୁନ୍ଦରୀ ଏ ଦେଶରେ ଆଉ କେହି ନାହାନ୍ତି । ତାଙ୍କୁ ପାଇ ରାଜା ଏ ଦୁଇରାଣୀଙ୍କୁ ମନରୁ ଭୁଲିଗଲେ । ଏକାନ୍ତ ପ୍ରରେ ପଦ୍ମାବତୀଙ୍କ ନେଇ କେଳି କରନ୍ତି । କିଛିଦିନ ବାଦେ ପଦ୍ମାବତୀର ଗର୍ଭ ଜାତ ହେଲା । ପ୍ରଥମ ଗର୍ଭ ହେତୁ ଗର୍ଭର ଲକ୍ଷଣ ପ୍ରକାଶ ପାଇଲା ତା ଦେହରେ । ରାଜା ସିନା ବୁଝିପାରିଲେ ନାହିଁ, ହେଲେ ମାଇପି ଆଖିକ ଫାଙ୍କି ହେବ କୁଆଡୁ । ଦୁଇ ସତ୍ତୁଣୀ ବୁଝିପାରିଲେ ପଦ୍ମାବତୀର ଗର୍ଭ ଜାତ ହେବାକଥା । ସେଇଠୁ ସେମାନଙ୍କ ମନରେ ହିଂସାର ନିଆଁ ବହ୍ନିଳ ଉଠିଲା ।

ବଡେ ବଡ଼ ଦୁଇରାଣୀ ବସି ବିଚାର କଲେ, ଆମେ ଦୁଇରାଣୀ ଥାଉ ଥାଉ ରାଜାତ ପଦ୍ମାବତୀଙ୍କ ପାଇ ଆମ କଥା ଏକବାରେ ଭୁଲି ଗଲେଣି । ଏବକୁ ପୁଣି ପଦ୍ମାବତୀ ପୁଅଝିଅର ମା ହବାକୁ ଯାଉଛି । ସେ ପିଲାର ମା ହେଲେ ଆମର କୋଉ ସୁଖ ଶିରୀ ଏ ଘରେ ରହିବ । ଏହାପରେ ବିଚାର କଲା ବଡେ ସେ ଦେଶରେ ସବୁଠାରୁ

ବଡ଼ ଜଡ଼-ବୁଟିବାଲା ଜ୍ଞାନଦେଈ କେଳୁଣୀକୁ ଡକାଇଲେ । ବୁଢ଼ୀ ଆସିବାରୁ ଦୁଇ ରାଣୀ ସନ୍ତେଇ କାନ୍ଦ କହିଲେ, ମାଉସୀ ! ତୁ ଆମର ଧର୍ମର ମାଉସୀ । ଏଇ ମାହାର୍ଦ୍ଦ ବନ୍ଧନ ନେ । ଆମେ ତୋତେ ଘଡ ବରତନ ଦବୁ । ତୁ ଆମକୁ ଏ ସଙ୍କଟରୁ ଉଦ୍ଧାର କର । ରାଣୀଙ୍କ କଥା ଶୁଣି ମାହାର୍ଦ୍ଦ କାନରେ ବାନ୍ଧୁ ବାନ୍ଧୁ ବୁଢ଼ୀ ପାକୁଆ ପାଟିରେ ପାଟିଏ ହସି ପଚାରିଲା ଆଲୋ ! ରଜାଙ୍କର ଝିଅ ବୋହୂ ହୋଇ କୋଉ ଅଭାବ ତୁମର ହେଲା ? ରାଣୀ କହିଲେ, ମାଉସୀ ! ଆମେତ ପାଟରାଣୀ ହୋଇଥିଲୁ, ଏଣିକ ପାଟବେଣୀରୁ କମି ହେଲୁଣି । ରଜା ଗୋଟିଏ ପଛରେ ବାହାହୋଇ ଆମକୁ ପାସଙ୍କୁ ନେଉ ନାହାନ୍ତି । ସେ ଏବକୁ ଗର୍ଭବତୀ ହେଲାଣି । କେତେଦିନ ଗଲେ ପୁଅର ମା ହୋଇ ରାଜଶିରୀ ଭୋଗ କରିବ । ଆମେ ବଞ୍ଝା ବାଲୁଙ୍ଗା ପର ଜଣା ହୋଇଯିବୁ ସିନା । ଏ କଥା ଶୁଣି ବୁଢ଼ୀ କହିଲା, ଏଇ କଥାକୁ ଏତେ ଡର ? କୋଉ ଗୁଆର କଥା, ଟିପେ ଡବେରରେ କାମ ଫତେ । ରଜ ଟା ଗୋଷ୍ଠା କୁଡ଼ପତ୍ର କୁନ୍ଦ କଡରେ ଘୁରୁଥିବ । ହଉଲେ ଝିଅ ମୋ ପାଉଣା ଗଣ୍ଡାକ ଦବଟି ଆଗେ । ମୁଁ ପଠାଇଏ ଦଉଚି ସେ ମ'ଇଚଆ ରନାଟାକୁ । ରାଣୀ ତାକୁ ଦଶଟି ଟଙ୍କା ଦେବାରୁ ବୁଢ଼ୀ ଟଣି କରୁ କରୁ କହିଲା, ମୁଁ କାଲି ବଶୀକରଣ ନାସା ଟିପାଏ ଦେବି । ତାକୁ ବ ନର ସ୍ୱାକୁ ଖୁଆଇ ଦେବ । ଦେଖିବ, ସେ ତୁମର କଥାରେ ଉଠ ବସ ହଉଥିବ । ରାଣୀ ପଚାରିଲେ, ପାରିବୁ ତ ମାଉସୀ ! ବୁଢ଼ୀ ପୁଣି ପାଟିଏ ହସି କହିଲା, ଆଲୋ ! ମୋତେ କ'ଣ ହୋଲି ଠଉରେଇଲ କି ? ଗାଁ ଚଉକିଆ ଠାରୁ ପୋଲିସି ଅଫିସର, ଡାଉଟର ଠାରୁ ମେଷ୍ଟର ଯାଏ କୋଉଁ ପୁଅଟା ମୋ ନାମ ନ ଶୁଣି ରହିଛି କହ । ସମସ୍ତଙ୍କୁ ଟିପାଏ ଦେଇ ଦେଇଚି । ଏଇ ରଜାଟି ବାକି ଥିଲା । ଅବକା ମୋ ପାଲରେ

ପଡ଼ୁଛି ଆସି । ଆଚ୍ଛା କାଲି ସକାଳେ ଆସି ଦେଇଯିବ । ମୋ ପାଇଁ ଝଗଲଗୁଣ୍ଠ ଶାଢ଼ୀ ଖଣ୍ଡେ ରଖିଥିବ । ଏହା କହି ବୁଢ଼ୀ ଗଲା । ତହିଁ ଆରଦିନ ଭୋରରୁ ଆସି ଦେଇଗଲା ଦାସ । ରାଣୀମାନେ ତାକୁ ଜଳଖିଆରେ ମିଶେଇ ରଜାଙ୍କୁ ଖାଇବାକୁ ଦେଲେ ।

ସେଦିନ ସଞ୍ଜବେଳକୁ ଦୁଇରାଣୀ ରଜାଙ୍କୁ ଡକେଇ କହିଲେ, ଆମେ ଶୁଣିଲୁ ସାନରାଣୀଟା କୁଆଡ଼େ ଓଲୁ । ରାଜପୁରରେ ରହିବା ଭଳି ଯୋଗ୍ୟତା ତା'ର ଆଦୌ ନାହିଁ । ବାରଲୋକ ବାରକଥା କହୁଛନ୍ତି । ଆମେ ଶୁଣି ଶୁଣି ଭଲ କାନକୁ ବଧିର କଲୁଣି । ତମକୁ କ'ଣ ଏକଥା କିଛି ଜଣାଯାଉନ ? ରଜା ତ ସେତେବେଳକୁ ଦାସ ନିଶାରେ ଭୁଲିଗଲେଣି । କହିଲେ କ'ଣ କହୁଛ ? କାହିଁ ମୋତେ ତ ସେପରି କେହି କିଛି କହିନାହାନ୍ତି । ଆଚ୍ଛା, ତାକୁ ଏଠାକୁ ଡକେଇ କିଛି ଗୋଟାଏ ପ୍ରଶ୍ନ ପଚାରିଲ ଦେଖି, କହିପାରୁଛି କି ନାହିଁ ଶୁଣିବା ।

ରଜାଙ୍କଠାରୁ ଜବାବ ପାଇ ରାଣୀମାନେ ପଦ୍ମାବତୀଙ୍କ ଡକେଇ ଆଣିଲେ । କଥାରେ ଅଛି, ପାଇଛି ଗେରସ୍ତର ବୁଦ୍ଧି, ସଜ ହୋଇଛି ବାପଘରକୁ । ରାଣୀମାନେ ରଜାଙ୍କ ଆଗରେ ପଦ୍ମାବତୀଙ୍କୁ ପଚାରିଲେ ଆମର ଏଇ ଏକ, ଦୁଇଠାରୁ ବାର ଅଙ୍କର ଅର୍ଥ କହି ଆମ ସଙ୍ଗକୁ ଆ । ନୋହିଲେ ତୋତେ ଆମେ ସଙ୍ଗରେ ବସେଇ ପାରିବୁ ନାହିଁ ।

ପଦ୍ମାବତୀ କହିଲା, ମୁଁ ତ ରଜାଝିଅ, ରଜାର ରାଣୀ । ମୁଁ ଜଉତିଷ କାମ କରି ପେଟ ପାଳେନା, କ'ଣ ବାର ଅଙ୍କର ଅର୍ଥ କହିବି ? ମୋତେ ସେ ପାଠ ଜଣାନାହିଁ । ସେ ଏପରି କହିବାରୁ ରଜା ବିଗିଡ଼ିଗଲେ । ପାଇକକୁ ଡକେଇ କହିଲେ ତମେ ଏଇ ସାନ ରାଣୀକୁ ନେଇ ରାଜ୍ୟରୁ ବାହାର କରିଦେଇ ଆସ । ପାଇକେ ତ

ହୁକୁମର ଖବର । ସେମାନେ ପଦ୍ମାବତୀଙ୍କ ନେଇ ରାଜ୍ୟ ବାହାର କରିଦେଇ ଆସିଲେ । ରଜା ଭାବିଲେ, ସତରେ ସେଇଟା ରାଣୀ-ଯୋଗ୍ୟ ନୁହେଁ । ଜଳକୁଳର ବଳ ଚାଏବା । ପଦ୍ମାବତୀଙ୍କ ଚରୁ ଦେଇ କଉଡ଼ିରାଣୀ ହସଖୁସିରେ ଦିନ କଟାଇଲେ ।

ରଜାର ଦୁଲଣୀ ରଜାର ପ୍ରିୟା
ହୋଇ ଯେ ଥିଲା ।
କୁଟଚକ୍ରେ ପଡ଼ି ଆଜ ସେ
ପଥେ ଭିକାରି ହେଲା ।
ଯା କୋମଳପାଦ ସେବିକା
ଥିଲେ ସହସ୍ର ଦାସୀ ।
ଅମଙ୍ଗ ପଥରେ ଆଜ ସେ
ଗଲେ ମନର ବାସି ।
ଚଳେ ବନବାଳୀ ପାହାଡ଼
ପଥେ କରି ରୋଦନ ।
ଝରିପଡ଼େ ଲୁହ ଝରଣା
ଫୁଲ ଭଳି ବଦନ ।
ଡାକେ ତା ଆରାଧ୍ୟ ଦେବତା
ହର ଗଉରୀ ନାମେ ।
ଏଣୁପରି ତାଙ୍କ ପ୍ରବେଶ
ହେଲା ଶିବର ଧାମେ ।

ପଦ୍ମାବତୀ ତ ପିଲାଟି ଦିନରୁ ହରଗଉରୀ ପୂଜାକରି ଆସୁଛି । ଏବେ ବିପଦରେ ପଡ଼ି ସେଇ ଦୁଇ ଦେବଦେବୀଙ୍କୁ ଆରାଧନା କରି ବସିଲାବେଳେ ପଦମାବତ । ସେଠାରେ କେଦାରେଶ୍ୱର ମନ୍ଦିରକୁ ଯାଇ ତାଙ୍କୁ ଧ୍ୟାନ ଦେଇ ଡାକିଲେ । ଏକମନ୍ଦା ହୋଇ

ହରଗଉରୀଙ୍କୁ ଡାକିବାରୁ ତାଙ୍କୁ ଅନ୍ୟ କୌଣସି ବିପଦ ହେଲା ନାହିଁ ।

ଏବେ ହର-ଗଉରୀ ଦୁହେଁ ସ୍ୱର୍ଗକୁ ଯାଇଥିଲେ । ସେଠାରେ ନାଚ ଗାୟନ କରୁ କରୁ ଅନେକ ଡେରି ହୋଇଗଲା । ଏଣେ କୈଳାସ ପୃଷ୍ଠରେ ଉମା ଗଣେଶ କାର୍ତ୍ତିକଙ୍କୁ ଗୁହ୍ମ ଯାଇଥିଲେ । ଏ ଦୁହେଁ ଖେଳୁ ଖେଳୁ ଲଗେଇ ଦେଲେ କଳି କଜିଆ । କଥାଟା ସାମାନ୍ୟ ଅବଶ୍ୟ, ସେତେବେଳେ ତକରାର୍ । ଗଣେଶଙ୍କ ଖଡ଼ୁ ଗୋଡ଼ାକରେ କାର୍ତ୍ତିକଙ୍କ ଖଣ୍ଡା ବାଜିଲା । ସେଇଥିରୁ ସୁରୁ ହୋଇ ସ୍ୱର ଗଲା ସ୍ୱର୍ଗକୁ । ଗଣେଶ ଖଣ୍ଡାଟାକୁ ଫୋପାଡ଼ି ଦେଲେ । କାର୍ତ୍ତିକ ତାଙ୍କୁ ଖତେଇ ଦେଲେ । ଗଣେଶ କହିଲେ, ଆରେ ଛ'ମୁଣ୍ଡିଆ ନାଉ ହାଣ୍ଡିଆ ! ରହିଥା ଆଜି ମା ଆସନ୍ତୁ କହିଦେବି । କାର୍ତ୍ତିକ କହିଲେ, ଆରେ ହାତୀ ମୁଣ୍ଡିଆ, ଭୁଣ୍ଡି ପେଟୁଆ । ରହିଥା, ବାପା ଆସନ୍ତୁ କହିଦେବି । କାର୍ତ୍ତିକଙ୍କର ବାରଟା ଆଖି ଜଳ ଜଳ କରିବାରୁ ଗଣେଶ ଗ୍ରାସ ଆତୁର ହୋଇ ବଢ଼ିଗଲା । ହେଲେ ତାଙ୍କର ତ ଖତେଇ ହେବାର ଉପାୟ ନାହିଁ । ଦାନ୍ତ ତାଡ ବସିବା ଜାବୁଡ଼ା ସମାନ । ସେ କହିଲେ, ଅଲକ୍ଷଣାଟାର ଛ ଟା ମୁଣ୍ଡକୁ ଦୁଇଟା ଗୋଡ଼ । କାର୍ତ୍ତିକ କହିଲେ, ତୋର ମୋଟାଏ ହାତୀମୁଣ୍ଡ, କୁଲାପର କାନ । ତ' ହାତୀଆ ନାକ, ଦାନ୍ତଟା ବାହାରିଛି ଢେଙ୍କିପରି । ମଞ୍ଜୁର ରହିଲେ ତ ବରଷ୍ଣ ଜଳେ । ଏମିତି କଥାରେ କୋଉ ପିଲାର ବା ରାଗ ନ ହବ । ଗଣେଶ ଶୁଣ୍ଢ ବଢ଼େଇ କାର୍ତ୍ତିକଙ୍କ ସବୁ-ସନଟାକୁ ଟାଣିଦେଲେ । କାର୍ତ୍ତିକଙ୍କ ରାଗ ବଢ଼ିବାରୁ ସେ ଆସି ଗଣେଶଙ୍କ କୁଲାପର କାନଟାକୁ ମୋଡ଼ି ଦେବାରୁ ସେ ହାତୀପାଟି ମେଲେଇ ନାକଟାକୁ ଉପରକୁ ଟେକି ଭେଁ ଭେଁ କୁହାଟିଲେ । ସେ ଶବଦ ଯାଇ ସ୍ୱର୍ଗ ପୁରରେ ପହଞ୍ଚିଲା । ଜୁଆ ମା'ଙ୍କର ତ କାନଧ୍ୟାନ ଦୋଟାଏ ଥାଏ ପିଲା ପାଖରେ । ଉମା ଶୁଣିପାରୁ

ଶିବଙ୍କୁ କହିଲେ, ହଇହେ ଶୁଣୁଚ ? ତମେ ଏଣେ ନାଟକରେ ଲୋଟି ପଡ଼ୁଚ, ତେଣେ ଘରେ ପିଲାପୋଡ଼ାଙ୍କ ଫୌଜଦାରୀ ସୃଷ୍ଟି କଲେଣି । ତାଙ୍କ ଅପିଲ ଶୁଣ ?

ଶିବଙ୍କର ଏଣେ ନାଟକର ତାଳ ଭାଙ୍ଗିଯାଉଚ, ସେ କହିଲେ, ଗଲ ଗଲ ଶୀଘ୍ର । କାର୍ତ୍ତିକଟା ବଡ଼ ବଦମାସ । ସେ ହୁଏତ ଗଣେଶଙ୍କୁ ଚଟକଣା ଚଳାଉଥିବ । ମୁଁ ଯାଉଛି ବୁଢ଼ା ଷଣ୍ଢରେ ଚଢ଼ି ପଛରେ । ତମେ ସିଂହରେ ଚଢ଼ି ଶୀଘ୍ରଯାଇ କଳି ଥମାଅ । ମୁଁ ଦେଖୁଛି ବୁଢ଼ାଟା । ସେମିତି ଉମା ସିଂହରେ ଚଢ଼ି ଆସୁ ଆସୁ ବାଟରେ ଶୁଣିଲେ କିଏ ମାଇପି ଲୋକ ଗୋଟାଏ କାନ୍ଦ କାନ୍ଦ ହେଉଛି । ସାଧାରଣତଃ ମାଇପେଙ୍କ ଠାଇଁ ମାଇପେ ବେଶୀ ଦୟା ଦେଖାନ୍ତି । ନାରୀ କଣ୍ଠର ଆବେଦନ କେଉଁଠି ବୃଥା ହୁଏନା । ପଦ୍ମାବତୀର କାତରଧ୍ୱନି ଶୁଣି ଦେବୀ ଆସି ପାଖରେ ପହଞ୍ଚି ତାକୁ ଚାହିଁଲେ । କହିଲେ, କ'ଣ ଆମକୁ ପୂଜା କରି ଭଲଘର ଭଲ ବର ପାଇ ସୁଖରେ ଥିଲୁ । ପୁଣି ଆଜି ଏମିତି କ'ଣ ଭୁଲ ହେଲୁ କାହିଁକି ? ପଦ୍ମାବତୀ କହିଲା, ମୁଁ ଗର୍ଭବତୀ ହେବାରୁ ସଉତୁଣୀମାନେ କୂଟକରି ଘରୁ ତଡ଼ି ଦେଇଛନ୍ତି । ଅବା ମୋର ଆଶା ଭରସା କେହି ନାହିଁ । ତମକୁ ଭରସାକରି ପଡ଼ିଚି । ଯାହା ଭଲ ହବ ତାହା କର ।

ଗର୍ଭବତୀଙ୍କି ଦୟା ନକରି କିଏ ସେ ପାରେ । ସେଇଠୁ ଦୁର୍ଗା ପଦ୍ମାବତୀର ଦୁଃଖ ବୁଝି କହିଲେ, ହଉ ଚିନ୍ତା କରନା । ମୁଁ ତୋର ସବୁ ସୁବିଧା କରି ଦଉଚି । ଏଇଠି ସୁଖରେ ରହିଥା । ଏହାକହି ବେତାଳଗଣଙ୍କୁ କହିଲେ, ଏଇକ୍ଷଣି ଯାଇ ପଦ୍ମାବତୀର ଯେତେସବୁ ଜିନଷ ଅଛି ବୋହି ଆଣ । ମଠର ଆଗରେ ଘର ଖଣ୍ଡିଏ କରି ତାକୁ ରଖେଇ ଦିଅ । ତାର ଚଳିବାକୁ ଯାହା ଦରକାର କୁବେର ଭଣ୍ଡାରରୁ ଆଣିଦେବ । ମୁଁ କୁବେରଙ୍କୁ କହି ଦଉଚି । ଶୁଣ ! ପଦ୍ମାବତୀକୁ ଯତନ୍ ଦେଇ ରଖିଥିବ । ତା'ର ସେବାରେ କିଛି ବାଧକ

ଧନ୍ୟ ହୁଏ । ବେତାଳମାନେ ରାଜି ହେବାରୁ ଉମା ପଦ୍ମାବତୀଙ୍କ କହିଲେ ତୋର କିଛି ଚିନ୍ତା ନାହିଁ । ତୋ ଗର୍ଭରୁ ବୀରପୁତ୍ର ଜାତ ହେବ । ସେଇ ତୋ ଅପମାନ ମୋଚନ କରିବ । ଯଦି କିଛି ଆପଦ ବିପଦରେ ପଡ଼ୁ, ମୋତେ ଡାକିବୁ । ଏହା କହି ଉମା ଯାଇ ଗଣେଶ କାର୍ତ୍ତିକଙ୍କୁ ବୋଧବାଧ କରିଦେଲେ ।

କେଦାରେଶ୍ୱରଙ୍କ ମନ୍ଦିର ପାଖରେ ପୁରଟିଏ ଗଢ଼ିଦେଇ ବେତାଳମାନେ ସୁବାହୁ ଉଆସରୁ ପଦ୍ମାବତୀ ଖଟରୁ ଖଡ଼କାଯାଏ ବୋହିନେଇ ଥୋଇଦେଲେ । ପଦ୍ମାବତୀ ସେଇଠି ନିଶ୍ଚିନ୍ତରେ ରହିଥାଏ । ଦିନ ହେବାରୁ ଗର୍ଭ ଯନ୍ତ୍ରଣା ଜଟିଲ । ସେ ଉମାଙ୍କୁ ଜଣାଇବାରୁ ମଙ୍ଗଳାଙ୍କୁ ଡାକି କହିଲେ, ଗଲୁ ଭଉଣୀ! ପଦ୍ମାବତୀର ପିଲାପିଲି ହେବନା କ'ଣ ଦେଖିବୁ । ଉମାଙ୍କ କଥାରେ ମଙ୍ଗଳା ଆସି ଧାଈ ରୂପରେ ପଦ୍ମାବତୀର ଶୂଳ ଧରିବା ଠାରୁ ପୁଅର ନାହି କାଟିବା ଯାଏ ସବୁ କାମ କରିଦେଇ ମାସେ ପର୍ଯ୍ୟନ୍ତ ସେଇଠି ରହିଲେ । ତା ପରେ ମା ପୁଅଙ୍କୁ ଗୁଡ଼ ବୁଝେଇ ସୁଝେଇ ମଙ୍ଗଳା ଗଲେ ।

ପଦ୍ମାବତୀ ପିଲାର ହେପାଜତ କରେ । ଗାଧୋଇ ଶିବ ପୂଜା ଖିଆପିଆ କରି ରହିଥାଏ । ଏମିତି କରି ପାଞ୍ଚବର୍ଷ ଗଲା । ପୁଅଟିର ନା ବୀରବାହୁ ରଖିଛନ୍ତି । ମଙ୍ଗଳାଙ୍କ ଦୟାରୁ ସେ ଚନ୍ଦ୍ରକଳାପରି ବଢ଼ି ଏବେ ପଢ଼ିବାକୁ ହେଲାଣି । ଦିନେ ଉପମନ୍ୟୁ ବୋଲି ଜଣେ ଋଷି ବଦରିକାରୁ ଆସି ପିଲାକୁ ଦେଖି ଖୁସିହେବାରୁ ପଦ୍ମାବତୀ ବୀରବାହୁର ପଢ଼ିବା କଥା ଜଣାଇଲା । ଋଷି ସେ କଥାରେ ରାଜି ହୋଇ ବୀରବାହୁକୁ ଆଶ୍ରମକୁ ନେଇଗଲେ । ସେଠାକୁ ଯାଇ ବୀରବାହୁ ତିନି ମଣ୍ଡଳୀରୁ ଆରମ୍ଭ କରି ଛଅଶାସ୍ତ୍ର ନଅ ବ୍ୟାକରଣ, ଧନୁର୍ବେଦ, ଜ୍ୟୋତିଷ, ବିଜ୍ଞାନ, ଯନ୍ତ୍ର, ତନ୍ତ୍ର ଓ ଗାନ୍ଧର୍ବିକ ବିଦ୍ୟା ପଢ଼ି ଦଶ ବର୍ଷରେ ପୁରୁଖା ହୋଇଗଲା । ତାର ପାଠ ପଢ଼ା ଶେଷ ହେବାରୁ

ଉପମନ୍ୟୁ କହିଲେ, ବତ୍ସ ! ତୁମର ପଢ଼ିବା ଶେଷ ହୋଇଛି । ଏବେ ଘରକୁ ଯାଅ । ବୀରବାହୁ ଗୁରୁଙ୍କୁ ପ୍ରଣାମ କରି ଘୋଡ଼ାରେ ଚଢ଼ି ସେଇଠୁ ଆସିଲା । ଆସିବାବେଳେ ବାଟରେ ତା ମୁଣ୍ଡରୁ ଟୋପିଟା ଖସି ପଡ଼ିବାରୁ ସେ ଗୋଟିଏ ସାଥି ପିଲାକୁ କହିଲା ଆରେ ! ମୋ ଟୋପିଟା ଟେକିଦେଲୁ ଟିକିଏ । ଏ କଥା ଶୁଣି ସେ ଖଟଚଡ଼ା ପିଲାଟି ଚିଡ଼ି ବକେଇ କହିଲା, ତୁ ଉଠେଇ ନଉନୁ । ଅଣବାବୁଆଟାର ରୁଚର ଦେଖ । ଘୋଡ଼ାରେ ଚଢ଼ି ଯାଉଛୁ ବୋଲି ମୁଁ କ'ଣ ତୋର ଚାକର ହେବି ? ଏ କଥାଟା ବୀରବାହୁକୁ ବେଶ୍ ବାଧିବାରୁ ସେ ଘରକୁ ଆସି କିଛି ନ ଖାଇ ମୁହଁ ଶୁଖାଇ ବସି ରହିଲା । ମା'ଙ୍କୁ ନମସ୍କାର ଟିଏ କରିବା ଛଡ଼ା କଥା ନାହିଁ । ପଦ୍ମାବତୀ ଦେଖିଲା ପୁଅ ଗୁରୁ ଆଶ୍ରମରୁ ଆସି ହସ ଖୁସି ନକରି ଗୁମ୍ ହୋଇ ବସିଛି କାହିଁକି ?

ସେଇଠୁ ଆସି ପୁଅକୁ ଆଦର କରି ପଚାରିଲେ ବାବା ! କଣ ହେଲା ତୋର । କେହି ତୋତେ ଗାଳି ଅପମାନ କଲେ ନା କଣ ? ବୀରବାହୁ ମା'ଙ୍କୁ କହିଲା, ମୁଁ ପାଠପଢ଼ା ସାରି ଗୁରୁଆଶ୍ରମରୁ ଆସିଲା ବେଳେ ଗୋଟାଏ ପିଲା ମୋତେ ଅଣବାବୁଆ କହି ଅପମାନ ଦେଲା । ସତରେ ମୁଁ କଣ ଅଣବାବୁଆ ପୁଅ ? ବୀରବାହୁର କଥା ଶୁଣି ପଦ୍ମାବତୀର ବାତଅଣ୍ଡାର ଯାଇ ପିତ ପଶିଲା । ସେ ବୀରବାହୁକୁ ବୋଧ ଦେଇ କହିଲେ, ତୁ ଏତେ ପାଠ ପଢ଼ି ଗୁରୁଙ୍କୁ ସନ୍ତୋଷ କରି ଲେଉଟିଲୁ ଏଡ଼ି ସାମାନ୍ୟ ପିଲାଟା କଥାକୁ ବୁଦ୍ଧି ନସାରି ରୁଷି ବସିଛୁ । ଆକାଶ ନ ଥାଇ କାହାର ପିଲା ଜନ୍ମ ହୁଏ ? ଚାଲ ଆଗେ ଖିଆପିଆ କର । ବୀରବାହୁ କହିଲା, ମୋ ବାପା କିଏ ଆଗେ କହିଲେ ମୁଁ ଖାଇବାକୁ ଯିବି । ପଦ୍ମାବତୀ ନିରୂପାୟ ଦେଖି କହିଲା ତୋ ବାପାଙ୍କ ନା ସୁବାହୁ । ସେ ଚାମିଲି ନଗର ରଜା । ତୁ ରଜପୁଅ ! ତୋତେ କୋଉ ପୁଅ ଅଣବାବୁଆ କହିପାରେ ?

ପଦ୍ମାବତୀ କଥାଶୁଣି ବୀରବାହୁ ଅବାକ୍ ହେଲା । ତାପରେ ମା'ଙ୍କୁ ପଚାରିଲା ତୁମେ ରାଣୀ ହୋଇ କାହିଁକି ବଣରେ ଘରକରି ରହିଚ । ପଦ୍ମାବତୀ ଦୁଃଖରେ କାନ୍ଦ ପକେଇ କହିଲା, ବାପ ! ତୁ ଯେତେବେଳେ ଗର୍ଭରେ ଥିଲୁ, ସେତେବେଳେ ତୋର ବଡ଼ ମାଆମାନେ ମୋତେ ଏକଠାରୁ ବାରଯାଏ ବାରଟି ଅଙ୍କ ପଚାରି ତାର ଅର୍ଥ ବୁଝାଇ ଦେବାକୁ କହିଲେ । ମୁଁ ତାର ଅର୍ଥ କହି ନ ପାରିବାରୁ ତୋ ବାପା ଦୋଷାଦୋଷ କିଛି ନ ବୁଝି ମୋତେ ଘରୁ ତଡ଼ିଦେଲେ । ସେଇଠୁ ଆସି ମୁଁ ଭଗବତୀଙ୍କ ପୂଜା କରି ବନେ ବନେ ରହିଛି । ପଦ୍ମାବତୀ କଥା ଶୁଣି ବୀରବାହୁ କହିଲା ମା ! ମୁଁ ବାପାଙ୍କୁ ଦେଖିବାକୁ ଯିବି । ମା'ମାନେ ପଚାରିଥିବା ବାରଟି ଅଙ୍କର ଅର୍ଥ କହି ତମକୁ ନିର୍ଦ୍ଦୋଷରେ ଦଣ୍ଡିବାର କାରଣ ପଚାରି ଗୋଟାଏ ଫଏସଲା କରି ଆସିବି ।

ବୀରବାହୁ କଥା ଶୁଣି ପଦ୍ମାବତୀ ମୁଣ୍ଡରେ ବଜ୍ରପାତ ହେବା ଭଳି ଅନୁଭବ କଲା । ଶେଷକୁ ପୁଅର ଦୃଢ଼ତା ଦେଖି କହିଲା, ହଇରେ ବାପ ! ତୁ ଯିବୁ ଯଦି କ୍ଷତି ନାହିଁ । ହେଲେ ଅଙ୍କର ଅର୍ଥ ନ କହିବାଯାଏ ତାଙ୍କୁ ଚିହ୍ନା ଦବୁ ନାହିଁ । ବୀରବାହୁ ମା କଥା ମାନି ଚଳିବ ବୋଲି ସେଠାରୁ ବିଦାହୋଇ ବାହାରିଗଲା । ଗଲାବେଳେ ପଦ୍ମାବତୀ ତା ମୁଣ୍ଡରେ ସିଦ୍ଧବିଭୂତି ଲଗାଇ ଦେଇ କହିଲା, ବାବା ! ତୋ ମନକାମନା ଭଗବତୀ ପୂର୍ଣ୍ଣ କରନ୍ତୁ ।

ବୀରବାହୁ ସେଠାରୁ ଯାଇ ବହୁତ ଜାଗାରେ ବୁଲିଲା । ଯାହାକୁ ଯେଉଁଠି ପୁଣ୍ୟ ଲୋକ ଦେଖେ ପଚାରେ । ଏକଠାରୁ ବାର ଅଙ୍କର ଅର୍ଥ କ'ଣ କହିପାରିବ ? ଯିଏ ଶୁଣେ ସେ କହେ, ଆମେ ଜାଣୁନା । ଏହି ପ୍ରକାରେ ବହୁତ ଦେଶ ବୁଲି ବୁଲି ଶେଷରେ ଯାଇ ବିନ୍ଧ୍ୟାଚଳ ଦେଶରେ ପହଞ୍ଚି ସେଠାରେ ଜଣେ ଅତି ବୁଢ଼ା

ଲେଖକୁ ଦେଖି ଅଙ୍କର ଅର୍ଥ ପଚାରିବାରୁ ବୁଢ଼ା କହିଲା, ବାବା ! ମୋର ତ ସେ ପାଠର ଜ୍ଞାନ ନାହିଁ । ତୁ ଏଇ ପାହାଡ଼ ବାଟ ଧରି ଉପରକୁ ଉଠିଯା, ସେଠାରେ ଅନେକ ସାଧୁ ସନ୍ନ୍ୟାସୀ ଅଛନ୍ତି, ସେଇମାନେ ତୋତେ ବତେଇ ଦେବେ । କଥାରେ ଅଛି ବପଦରେ ପଡ଼ିଲେ ବୁଢ଼ାଙ୍କର ପରାମର୍ଶ ନେବ । ସେଇ କଥାକୁ ଭାବ ବୀରବାହୁ ବୁଢ଼ା କଥାମାନ ଶୁଣି କଣେ ପାହାଡ଼ ଉପରକୁ ଉଠିଗଲା ।

କଛୁବାଟ ଯାଇ ଦେଖିଲା, ସେଠାରେ ଗୋଟିଏ ଋଷି ଆଶ୍ରମ ଅଛି । ଖବର ନେଇ ବୁଝିଲା, ସେ ଋଷିଙ୍କ ନାମ ଏକପଦ ସିଦ୍ଧ ଋଷି । ସେଇଠୁ ବୀରବାହୁ ଋଷିଙ୍କୁ ଭେଟି ପ୍ରଣାମ କରିବାରୁ ଋଷି କଲ୍ୟାଣ କରି ପଚାରିଲେ, ଆରେ ପିଲା ! ତୁ ତ ରାଜପୁତ୍ର ପରି ଦିଶୁଛୁ । ଯୌବନ କାଳ ବି ହୋଇନାହିଁ । ମୁହଁରେ ନଣ ଦାଢ଼ି ଲାଗୁଛି ମାତ୍ର । ଏଇ ଅବସ୍ଥାରେ ଘର ଛାଡ଼ି ବଣ ପାହାଡ଼ରେ ବୁଲୁଛୁ କାହିଁକି ? ଘରୁ କଣ ରାଗିକରି ପଳେଇ ଆସିଚୁ ନା କଣ ? ବୀରବାହୁ କହିଲା ନାଇଁ, ମୁଁ ଆପଣଙ୍କ ନାଁ ଶୁଣି ଆସିଛି । ମୋତେ ଏଠାରୁ କାରଯାଏ ଅଙ୍କର ଅର୍ଥ ବୁଝେଇ ଦିଅ । ମୁଁ ଶିଖିଯାଇ ମୋର ମା'ର ଅପମାନ ମୋଚନ କରିବି । ଏ କଥା ଶୁଣି ଏକପଦ କହିଲେ, ଆରେ ପିଲା ! ଇଏ କଣ ସିଧା ପାଠ ନା କ'ଣରେ ସମସ୍ତେ କହିଦେବେ—ମୋତେ ତ ସେ ପାଠ ଜଣାନାହିଁ । ତୁ ଆଉ କଛୁବାଟ ଉପରକୁ ଉଠୁ । ସେଠି ଦ୍ୱିପଦ ସିଦ୍ଧମୁନି ଅଛନ୍ତି । ତାଙ୍କୁ ଯାଇ ପଚାରିବୁ ଯା, ସେଇ ତୋତେ ଏହାର ଅର୍ଥ କହିଦେବେ । ଏ କଥା ଶୁଣି ବୀରବାହୁ ପୁଣି ପାହାଡ଼ ଉପରକୁ ଉଠିଗଲା ।

"କଛୁଦୂର ଯାଇ ବୀରବାହୁ ସେ ପାହାଡ଼େ
ପ୍ରବେଶ ହେଲା ଦ୍ୱି'ପାଦ ଋଷି ଆଶ୍ରମରେ ।

ତାଙ୍କ ପାଦେ ନମି ପଚାରନ୍ତେ ବୀର ଅର୍ଥ
ସେ ବୋଇଲେ କହିବାକୁ ନୁହେଁ ମୁଁ ସମର୍ଥ ।
ଆଗେ ଯାଅ ଅଛନ୍ତି ନିଷାଦ ସିଦ୍ଧମୁନି
ସେ କହିବେ ବୀର ଅର୍ଥ ଆସିବୁ ତୁ ଶୁଣି ।
ତହୁଁ ଯାଇ ମିଳିଲା ସେ ନିଷାଦ ଆଶ୍ରମେ
ତାଙ୍କୁ ପୁଚ୍ଛିବାରୁ ଜଣାଇଲେ ସେ ଅକ୍ଷମେ ।
ବୋଇଲେ ଆଗକୁ ଯାଅ ଦେଖିବ କୁମର
ଚତୁର୍ଦଶୀ ସିଦ୍ଧଋଷି ଅଛନ୍ତି ସେଠାର ।
ସେ କହିବେ ବୀର ଅର୍ଥ ଅମ୍ଭେ ତାଙ୍କ ଶିଷ୍ୟ
ମନବାସନା ତୁମ୍ଭର ପୂରିବ ଅବଶ୍ୟ ।

ସେଠାରେ ବୀରବାହୁ ଯାଇ ଚତୁର୍ଦଶୀ ଋଷିଙ୍କ ଆଶ୍ରମରେ ପହଞ୍ଚିଲା । ସେ ଋଷି ବୀରବାହୁଙ୍କୁ ଦେଖି ପଚାରିଲେ, ଆରେ ପିଲା ! ତୁ ଏପରି କୋମଳ ବୟସ ଦେହଧରି ଏମିତି କଠୋର ଶ୍ରମକରି ଆମ ଆଶ୍ରମକୁ ଆସିଲୁ କାହିଁକରେ, ଆରେ ! ତୁ କଣ ବୋଉ ବାପାଙ୍କ ଉପରେ ଝଗିଡ଼ ଧଇଲୁ କି ?

ବୀରବାହୁ ଋଷିଙ୍କୁ ପ୍ରଣାମ କରି କହିଲା—ନାଇଁ, ମୁଁ ମୋ ମା'ର ଅପମାନ ମୋଚନ କରିବି ବୋଲି ଆପଣଙ୍କ ପାଖକୁ କଷ୍ଟ କରି ଆସିଛି । ଆପଣ ମୋତେ ଏକଠାରୁ ବାଆର ଅଙ୍କର ଅର୍ଥ କହି ଦିଅନ୍ତୁ । ଏକଥା ଶୁଣି ଚତୁର୍ଦଶୀ ଋଷି କହିଲେ ଆରେ ପିଲା! ଇଏ କଣ ମର୍ତ୍ତ୍ୟମଣ୍ଡଳର ପାଠ କରେ କହିଦେବା ? ଏ ପାଠ ସ୍ୱର୍ଗପୁରରେ କାହାରିକୁ ଜଣାନାହିଁ । ଆଚ୍ଛା ! ତୁ ପିଲାଟା ଯେତେବେଳେ ଏତେ କଷ୍ଟ କରି ଆସିଲୁଣି, ଉପାୟ କରି କହି-ଦେବା । ତୁ ଆମ ଆଶ୍ରମରେ ଆଠଦିନ ରହ । ବୀରବାହୁ କହିଲେ, ଜଣା ନଥିଲେ କେମିତି କହିବ ? ଆମକୁ ଆଜ ଦେବସଭାର ନିମନ୍ତ୍ରଣ ଅଛି । ସେଥିପାଇଁ ଆମେ ଆଜ ସ୍ୱର୍ଗକୁ

ଯିବା । ଲେଉଟିବାକୁ ସୁବିଧା ହେବ ନାହିଁ । ସ୍ୱର୍ଗକୁ ଗଲେ ସେଠାରେ ଦେବଗୁରୁଙ୍କୁ ପଚାରି ଆସି କହିଦେବା । ବୀରବାହୁ ପଚାରିଲା, ତମେ ମଣିଷ ହୋଇ ସ୍ୱର୍ଗକୁ ଯିବ କେମିତି ? ଋଷି କହିଲେ, ଆମର ଗୁରୁଙ୍କ ପ୍ରସାଦ ତପସ୍ୟା ସିଦ୍ଧ ହୋଇଛି । ତେଣୁ ଏକମାତ୍ର ଆମେ ସ୍ୱର୍ଗକୁ ସ୍ୱଶରୀରରେ ଯାଇ ଲେଉଟି ଆସିପାରିବା । ଏଇ ଯୋଉ ଧର୍ମପୁଞ୍ଜି ଦେଖୁଛୁ ଏଇ ଆମକୁ ସ୍ୱର୍ଗକୁ ନେଇଯିବ । ଏହା କହି ସେ ଖାଲକାଠର ପୁଞ୍ଜିଟିକୁ ଦେଖାଇ ଦେଇ ଆଶ୍ରମକୁ ବୀରବାହୁକୁ ନେଇଯାଇ କହିଲେ ଆଜିଠାରୁ ଯାଏ ସେ ଆଶ୍ରମ ଚଳାଇବ ତାଙ୍କ ହାତକୁ ବୁଝାଇ ଦେଲେ ।

ବୀରବାହୁ ଭାବିଲା ଋଷି କେମିତି କାଠ ଗଡ଼ରେ ଚଢ଼ି ସ୍ୱର୍ଗକୁ ଯିବେ ଟିକିଏ ଦେଖିବା ଆଗ । ଏହା ଭାବି ସେ ଋଷିଙ୍କର ଅଜାଣତରେ ଯାଇ କାଠଗଡ଼ ତଳେ ଲୁଚି ବସିଲା । ସନ୍ଧ୍ୟା ହୋଇ ଯିବାରୁ ଚତୁର୍ଦଶ ଋଷି ଯାଇ ସେଇ କାଠ ଗଡ଼ ଉପରେ ବସି କ'ଣ ଟିକିଏ ମନ୍ତ୍ର କରିଦେଲେ ଯେ କାଠ ଗଡ଼ଟା 'ଶୂନ୍ୟଗମନ' ରଥଟିଏ ହୋଇ ଆକାଶରେ ଉଡ଼ିବାକୁ ଲାଗିଲା । ବୀରବାହୁ ସେଇ ରଥ ତଳେ ବସି ଗୋଟାଏ ରଥ ଗୋଡ଼କୁ ଯାବୁଡ଼ି ଧରିଥାଏ । ସ୍ୱଁ ସ୍ୱଁ ସାଁ ସାଁ ଗର୍ଜି ଶୂନ୍ୟ ମାର୍ଗରେ ଯାଇ ରଥ ପହଞ୍ଚିଲା ସ୍ୱର୍ଗରେ । ବୀରବାହୁ ଫୁଲମାନ ସାହାଯ୍ୟରେ, କଦଳୀପଟୁକା ଠାରୁର ବେକରେ ଲାଗିବା ପରି ଯାଇ ସ୍ୱର୍ଗରେ ହାଜର ହେଲା । ଚତୁର୍ଦଶ ଋଷି ରଥରୁ ଓହ୍ଲାଇ ତଳକୁ ଆସି ଦେଖିଲାବେଳକୁ ବୀରବାହୁ ରଥତଳେ ଲଙ୍ଗପଙ୍ଗ ହେଉଛି ।

ତାକୁ ଦେଖି ତ ଚତୁର୍ଦଶ ବଗଲେ ଖପା । ଡିମା ଡିମା ଆଖି ଦେଖାଇ କହିଲେ, 'ଆରେ ତୁ ଟୋକା କି ସର୍ବନାଶ କଲୁରେ !' ଆରେ ! ତୁ ଯୋଉ ବେଶ କାମ କରି ଆସି ସ୍ୱରଗ ଭୂଇଁରେ ପହଞ୍ଚିଲୁଣି ଇନ୍ଦ୍ର ଜାଣିଲେ ଆମର ଅଜ କି ବଡ଼ପଣିଆ

ରଖିବନା ? ଆମ ଦାନା ଗଣ୍ଡାକ ସାରିଲ୍‌ଣି । ବେକୁବ୍‌ଟା ଏମିତି କଲୁ ଯେ ଆମକୁ ଆଉ ସ୍ୱର୍ଗକୁ ନିମନ୍ତ୍ରଣ ମନା ହେବ । ଆଚ୍ଛା, ଯାହା କଲୁ କଲୁ ଅବକା କୁଆଡ଼କୁ ନ ଯାଇ ଏଇ ବଣେ ବଣେ ଲୁଚି ରହ । ମୁଁ ଇନ୍ଦ୍ର ସଭାରୁ ଘୂରି ଆସେ । ଏହାକହି ଋଷି ଦେବ-ସଭାକୁ ଗଲେ ।

ଋଷି ଯିବାରୁ ବୀରବାହୁ ଭାବିଲା, ତାହାହେଲେ ନରଦେହ ବହି ସ୍ୱରଗକୁ ଆସିଛୁ ଯେତେବେଳେ, ଟିକିଏ ବୁଲାବୁଲି ନକରି କିଏ ଏମିତି ଯିବ ? ପୁଣି ଭାବିଲା, ସ୍ୱରଗର ପାରିଜାତ କଥାତ ଆମର ସେଆଡ଼େ ବଡ଼ ବିଖ୍ୟାତ । ଦେଖିବା, ପାରିଜାତ ଫୁଲ କିମିତି । ଏହା ଭାବି ସେ ନନ୍ଦନ ବନ ଭିତରକୁ ଯାଇ ବୁଲି ଦେଖୁଛି, ଏତିକିବେଳେ ଶୁଭ୍ରସେନ ଗନ୍ଧର୍ବର ଝିଅ ଓ ଇନ୍ଦ୍ରଙ୍କର ନାତୁଣୀ ମେଘମାଳା ବୋଲି ଚୌଦବର୍ଷ କନ୍ୟାଟିଏ ଆସି ବୀରବାହୁ ଆଗରେ ଅବାକ ହୋଇ ଠିଆ ହେଲା । ତା'ର ଚେହେରା ଦେଖି ବୀରବାହୁକୁ ଭେଳକି ଘାରିଗଲା । ଏତିକିବେଳେ ମେଘମାଳା ହସି ହସି ପାଖକୁ ଆସି କହିଲା, ସୁନ୍ଦର ! ତମକୁ ଦେଖି ମୁଁ ପତିରେ ବରି ନେଇଛି ମନେ ମନେ । ତମେ ବାହା ହୋଇଛ କି ନା ମୁଁ ଜାଣେନା, ହୋଇଥିଲେ ହୁଅ ବରଂ ମୁଁ ତମକୁ ପତି କଲି । ବୀରବାହୁ ସେ କଥା ଶୁଣି କହିଲା—ନାହିଁ, 'ନାହିଁ', ସେ କଥା କୁହ ନାହିଁ । ମୁଁ ମର୍ତ୍ତ୍ୟର ନରଲୋକ; ତୁମେ କୋଉ ଦେବତାର ଝିଅ ହେବ ବୋଧେ ! ବାହା ହୋଇ ମୁଁ କ'ଣ ଝିନ୍‌ଝଟରେ ପଡ଼ିବ ?

ମେଘମାଳା କହିଲା, ଭୟ କରନା । ମୁଁ ଇନ୍ଦ୍ରଙ୍କର ନାତୁଣୀ, ଶୁଭ୍ରସେନ ଗନ୍ଧର୍ବର ଝିଅ । ତୁମେ ଏଇଠି ଥାଅ । ମୁଁ ଯାଇ ବୁଢ଼ାବାପାଙ୍କୁ କହି ବାହାଘରର ଯୋଗାଡ଼ କରୁଛି । ଏହାକହି ସେ ବୀରବାହୁର ପରିଚୟ ନେଇଯାଇ ଇନ୍ଦ୍ରଙ୍କୁ କହିଲା, ବୁଢ଼ାବାପା ! ତାମିଲ ଦେଶର ରାଜା ସୁବାହୁଙ୍କ ପୁଅ ବୀରବାହୁଙ୍କୁ ମୁଁ ପତିରେ

ବରଣ କରି ଅଇଲି । ମୋତେ ତାଙ୍କ ସଙ୍ଗରେ ବାହା କରେଇ ଦଅ । ଏକଥା ଶୁଣି ଇନ୍ଦ୍ର କହିଲେ,ଆଲୋ ତୋତେ ତୌଦବର୍ଷ ନ ହେଉଣୁ ଏମିତିକଆ ହେଇଗଲୁଣି ଯୁଗ ଅଉ କଣ ହବକ ? ଇନ୍ଦ୍ରାଣୀ କହିଲେ, ହଅନ୍ତା ନାଇଁ ! ତୁମ୍ଭର ପଗ ଅତି ଗେଲର ନାତୁଣୀ ସେ । କଥାରେ ଅଚ୍ଛି ଅତି ଗେହ୍ଲାଝିଅ ଦାଣ୍ଡରେ ଠିଆ, ଅତି ଗେହ୍ଲାପୁଅ ମନମୋଟିଆ । ଝିଅ-ପିଲଙ୍କୁ ଆକଟ ନକରି ଏକା ଏକା ଗୁଡ଼ିଦେଲେ ଏମିତି ହୁଏ । ହଉ କରି ଆସିଲାଣି ଯେବେ ତା କନାଗ କରଦଅ । ଇନ୍ଦ୍ର କହିଲେ, ଆଲୋ ମେଘମାଳା । ତୁ ମୋ ଭଲ ରଜାର ନାତୁଣୀ ହୋଇ ଗୋଟାଏ ନରଲୋକକୁ ବାହା ହବୁ ! କେମିତି ? ମେଘମାଳା କହିଲା ହଁ ହଁ, ସେ କଥା କେମିତି ହବ ଯାହା ମନ ଯାହାକୁ ରସେ, କର୍ପୂର ପରି ତାକୁ ସେ ବାସେ । ମୋ ମନ ମାନିଲା, ମୁଁ ତାଙ୍କୁ ବାହା ହେବ, ତୁମର କଣ ଉଣା ହଉଚି । ଶଚୀ କହିଲେ—ଗୁଡ଼, ପୁ ସ୍ୱହିତ ଡାକ ଟୋକା ସାଥିରେ ତାକୁ ବାହା କରେଇ ଦବଟି । ଦେଲି ନାଗ, ହେଲି ପାର । ଆମର ସେଥିରୁ କଣ ମିଳିବ ହେ । ଏହିପରି ତ କେତେପଣ ଇନ୍ଦ୍ରଙ୍କୁ ଶଚୀ ପାଢେଇ ଦେଲେଣି । ତାଙ୍କ କଥା କଣ ଇନ୍ଦ୍ର କାଟି ପାରନ୍ତେ ? ବୀରବାହୁକୁ ଡକେଇ ନେଇ ମେଘମାଳା ସଙ୍ଗରେ ବାହା କରାଇ ଦେଲେ । ମେଘମାଳା ବୀରବାହୁ ସେଠି ପାଞ୍ଚଦନ ରହିବା ପରେ ଇନ୍ଦ୍ର ନାତୁଣୀକୁ ବିଦା କରିବାକୁ ଆୟୋଜନ କଲେ । ବୀରବାହୁର ଇନ୍ଦ୍ର ନାତୁଣୀ ସଙ୍ଗରେ ବାହାଘର ହେବାର ଦେଖି ବୃଦ୍ଧପାଦ ଋଷି ହାଇଁପାଇଁ ହଉଛନ୍ତି । ମନେ ମନେ କହୁଚନ୍ତି ଗୋରୁ, କନ୍ୟା, ଭୂମି ଭାଗ୍ୟ ପ୍ରାପତ ସିନା । ଆମେ ବୃଦ୍ଧପାଦ ଋଷି, ଦେହଟାକୁ ଜାଳ ପୋଡ଼ି ତପକରି ଟିକଏ କମିନ୍ଦ ନାଗ ସୁଆଦ ପାଇଲୁ ନାହିଁ । ଏ ଟୋକା ପାଞ୍ଚଟାରେ ଆସି କେଡ଼େ ଫାଇଦା କହିନେଲା । ବନା ତପରେ ସ୍ୱର୍ଗରେ ପହଞ୍ଚି ଇନ୍ଦ୍ର ନାତୁଣୀ ଦେହରେ ହାତ ପକେଇ

ଦେଲା । ଦଣ୍ଡ, ଦ୍ଧ, ବର୍ଷାକାଳ ଗୁଲୁ ଆସେଗ । ଏହା ସ୍ୱର ଉଚ୍ଚେଲେ ସେ ।

ଏଣେ ମେଘମାଳା ଦେଖିଲା ତାକୁ ବଦାସ୍ତ ଦେବାର ଯୋଗାଡ଼ ହେଉଛି । ଗନ୍ଧର୍ବଗୁଡ଼ାକ ଲଗିପଡ଼ି ଫଣା-ଫଟା କରୁଛନ୍ତି । ସେଇଠୁ ସେ ଯାଇ ବୀରବାହୁଙ୍କୁ କହିଲା—ହେଇଟି ଶୁଣୁଚ । ବୀରବାହୁ ପଚ୍ଛରିଲା କଅଣ ? ଜଣା । କହିଲା ଆମକୁ ବଦା କରିବାକୁ ବୁଡ଼ାବାଘ ଯୋଗାଡ଼ କରେଲଣି । ତମକୁ ଯଦି ସେ ପଚ୍ଛରନ୍ତି କ'ଣ ନେବାକୁ ସୃହଁ, ତମେ କହିବ ମୋହନ ମୋହନ ବେଣୁ ଖଣ୍ଡକ ଦଅନ୍ତୁ । ଏକଥା କେବେ ଭୁଲାଦ ନାହିଁଟି । ସେ ବେଣୁଟିକ ଉପରେ ଜାକ ଯାହା ନାଁ ଧରି ଫୁଙ୍କିବ ସେଇ ଦେବାଦେବୀ ଯାଇ ତୁମ ପାଖରେ ହାଜର ହେବେ । ଆଜ ଇନ୍ଦ୍ରାଣୀ ତମକୁ ଯାହା ଯାଚିବେ କିଛି ନ ନେଇ ତାଙ୍କ ହାତରେ ଯୋଉ ରୁପାର ଝଡ଼ି ଖଣ୍ଡକ ଅଛି ତାକୁଇ ମାଗିନେବ । ତା'ର ଏପରି ମହିମା ଯେ ସେ ଝଡ଼ିରେ ଯେଉଁ ରୁପ ଆଙ୍କିବ ସେଇ ଜନଷ ସ୍ୱର୍ଗରୁ ଯାଇ ତୁମ ପାଖରେ ପହଞ୍ଚିବ । ଏକଥା ଶୁଣି ବୀରବାହୁ ସମ୍ମତ ହେବାରୁ ମେଘମାଳା ଖୁଲିଗଲା ।

ତହିଁ ଆରଦିନ ଇନ୍ଦ୍ର ମେଘମାଳା ଓ ବୀରବାହୁଙ୍କୁ ପାଖକୁ ଡକେଇ କହିଲେ, ଶୁଣ ବୀରବାହୁ ! ତମେତ ମର୍ତ୍ତ୍ୟର ମଣିଷ ହୋଇ ସ୍ୱର୍ଗର ଅପସରା କନ୍ୟା ଆମ ନାତୁଣୀକୁ ବାହାହେଲ, ଏଥୁ ବଳି ଆଉ କୋଉ ସୁଖ ଅଛି ? ଆଉ ମେଘମାଳା ! ତୁ'ତ ଆମ ଦେବକୁଳରେ କାଳ ହୋଇ ମଣିଷ ଜାତକ ବାହାହେଲ । ଅବକା ତମକୁ ବଦାୟ ଦେବାକୁ ହେବ । କଉ କଣ ନବ କୁହ । ଇନ୍ଦ୍ରାଣୀ କହିଲେ, ହଁ, ସେ ଝିଅଟିକା ଏତେଣଇକଟି ! ବୀରବାହୁ କହିଲା ଯଦି ଦବାକୁ ସତ୍ୟ କରୁଛନ୍ତି ତା ହେଲେ ମୋହନ ମୋହନ ବେଣୁ ଖଣ୍ଡକ ଦଅନ୍ତୁ । ଇନ୍ଦ୍ର କହିଲେ ନାଇଁ, ତାକୁ ଛାଡ଼ ଆଉ ସବୁ ମାଗ,

ଉଚ୍ଚୈଃଶ୍ରବା ଘୋଡ଼ା, ପାରିଜାତ ଫୁଲ, ଅଷ୍ଟରତ୍ନ, ଅପ୍ସରା ଆଦି ଯାହା ମାଗିବ ମାଗ, ଦେବା । ବୀରବାହୁ କହିଲେ, ନାହିଁ ଆଜ୍ଞା ! ସେଗୁଡ଼ିକ ସ୍ୱର୍ଗର ଦ୍ରବ୍ୟ, ଆମ ମର୍ତ୍ତ୍ୟରେ ଆଦରଣ ହେବନି ନାହିଁ । ମୋତେ ସେ ବଂଶୀଖଣ୍ଡିକ ଦିଅନ୍ତୁ । ଏବେ ଇନ୍ଦ୍ର ସତ୍ୟଭ୍ରଷ୍ଟ ହେବେ କିମିତି ? ମୋହନ ବେଣୁ ଖଣ୍ଡିକୁ ଆଣିଦେଲେ । ଶଚୀ କହିଲେ, ହଇ ନାତୁଣୀ ଜୋଇଁ ! ମୋଠାରୁ କ'ଣ ନେବନାହଁ । ମୋର ହରିଚନ୍ଦନ ଶତାଳଙ୍କାର ଆଦି ଅଛି । ସେଥିରୁ ତୁମେ କୋଉଟା ନେବ ? ବୀରବାହୁ କହିଲେ, ମୁଁ ତାକୁ ନେଇ କ'ଣ କରିବି ? ତମ ରୂପାଲି ଝଡ଼ ଖଣ୍ଡିକ ମୋତେ ଦିଅ । ଶଚୀ କହିଲେ, ମଲା ମଲା ସେ ଛଡ଼ର ମର୍ମ ତୋତେ କିଏ କହିଲେରେ ? ନିଶ୍ଚୟ ମେଘମାଳା କହିଛି । ଆଚ୍ଛା ହଉ, ମୁଁ କହିଛି ଯେତେବେଳେ ନେଇଯା, ଏହା କହି ସେ ଝଡ଼ ଖଣ୍ଡିକୁ ଆଣିଦେଲେ । ମେଘମାଳାକୁ କ'ଣ ନବୁ ପଚାରିବାରୁ ସେ କହିଲା, ମୁଁ ସ୍ୱର୍ଗର ଲୋକଟା, ମର୍ତ୍ତ୍ୟକୁ ଯାଇ କ'ଣ କରିବି ? ମୁଁ ସେଠିକି ଯିବି ନାହିଁ । ଇନ୍ଦ୍ର କହିଲେ—ଯାଲ, ଭଲ କହୁଚୁ, ସେଠିକି ଯାଇଥିଲେ ଏ ଟୋକା ତୋତେ ଚଳାଇ ପାରି ନ ଥାନ୍ତା । ଶଚୀ କହିଲେ, ଶେଷକୁ ଗ୍ରାମସେବିକା ହେବୁଣଂ ନେଇଥାନ୍ତୁ ଲୋ ନାତୁଣୀ ! ହଉ ଏଇଠି ରହିଯା । ଏହା କହି ସେ ମେଘମାଳାକୁ ନେଇଗଲେ । ବୀରବାହୁ ବେଣୁ ଓ ଝଡ଼ ଧରି ଆସି ରଥଚାଳକ ବସିରହିଲା । ଚତୁର୍ଦ୍ଦଶୀ ସିଦ୍ଧରଥ ରଥ ଚଳେଇ ଓହ୍ଲାଇ ଆସିଲେ ସ୍ୱର୍ଗରୁ ।

ଋଷି ଆସି ଆଶ୍ରମରେ ପହଞ୍ଚି ରଥରୁ ଓହ୍ଲାଇବା ଆଗରୁ ବୀରବାହୁ ବାହାରିଲାଣି । ତାକୁ ଦେଖି ଚକ୍ଷୁଃପଦ୍ମ କହିଲେ, କରେ ପିଲା ! ତୁତ ଆଚ୍ଛା ହଟହଟା କରି ମୋତେ ବିପଦରେ ପକାଇଥିଲୁ । ତୁ ମର୍ତ୍ତ୍ୟର ଟୋକାଟା । କୋଉ ବଳପରେ ଯାଇ ଇନ୍ଦ୍ର ନାତୁଣୀଙ୍କ ବାହା ହଉଥିଲୁ, ଭାଗ୍ୟକୁ ସିନା ସେ ରାଜିଳ ନାହିଁ । କୋହିଲେ

ତାକୁ ଆଣି ତୁ କଣ କଲେ ନଇ ପାଉଥାନ୍ତୁ ? ଶେଷରେ ବିଅଣ୍ଟା ବୋଡ଼୍ ହୋଇ ଆସି କେ ଜଠି ଡାକଘରେ କ ସ୍କୁଲରେ ଯାଇ ନୌକର କରି ପାଞ୍ଚ ପଚିଶଙ୍କ ଆଗରେ ଦୋଡ଼ାଙ୍କି ଛୁଡ଼ା ହୋଇଥାନ୍ତା । ହଉ ଯାହା ତ ବରବାଉ କଲୁ, ମୁଁ ତୋତେ କଲ୍ୟାଣ କରୁଚି, ତୁ ଏ ବଂଶୀଖଣ୍ଡକ ମୋତେ ଦେଇଯା । ମୋ ମାର୍ଜନ ସ୍ୱର୍ଗ ଦେଖିଲ୍, ଇନ୍ଦ୍ର ମାଳୁଣୀକୁ ବାହା ହେଲ୍, ସେଥିପାଇଁ ବେଣୁ ଖଣ୍ଡକୁ ଦେଇଯା । ବାରବାଉ କହିଲ, ସେ ବାଉଁଟି ଅଳ୍କର ଅର୍ଥ ଆଗେ କୁହ । ଋଷି କହିଲେ, ଆରେ ଆରେ ଅସଲ କଥାଟ ଭୁଲି ଥଇଲି ! ବୃହସ୍ପତିଙ୍କୁ ପଚାରିବାକୁ ଯାଇ ପଚାରି ପାରି ନାହିଁ । ଆଚ୍ଛା, ତୁ ଆଉ ମାସେ ରହିଲ ଆସିବୁ । ମୁଁ ଯାଇ ବୁଝିଆସି କହିବେବ । ବାରବାଉ କହିଲ, ହେକଥା ଯେବେ କହିବ ତେବେ ବଂଶୀ ପାଇବ । ଅବକା ମୁଁ ଯାଉଚି । ଋଷି କହିଲେ, ନାଇଁରେ ବାହାଘର ଗହଳରେ ଭୁଲିଗଲି ସିନା, ନ ହେଲେ··· । ବାରବାଉ କହିଲ, କାମରେ ଲାଗିବା ଭଳି କିଛି ନ ଦେଲେ ମୁଁ ବେଣୁଟି ଦେବନାହିଁ । ସେଇଠି ଚତୁଃପଟା ଋଷି କହିଲେ, ଆଚ୍ଛା ମୋ ପାଖରେ ଖଣ୍ଡିଏ ଦଉଡ଼ି ଆଉ ଗୋଟିଏ ଠେଙ୍ଗା ଅଛି । ମୁଁ ଦେଉଛି ତାକୁ ନେ । ବେଣୁ ଖଣ୍ଡକ ଦେ । ବାରବାଉ କହିଲ, ଠେଙ୍ଗା ଦଉଡ଼ି ନେଇ ମୁଁ କଣ କାଠ ବୋହିବି ? ଋଷି କହିଲେ, ତୋର ବଡ଼ କାମରେ ଲାଗିବରେ । ତୋର ଯେ ଶତ୍ରୁ ତାକୁ ବାନ୍ଧିବାକୁ କହିଲେ ଦଉଡ଼ି ଯାଇ ତକେ ବାନ୍ଧିବ । ଠେଙ୍ଗାକୁ ପିଟ୍ କହିଲେ, ଠେଙ୍ଗା ତା ମନକୁ ଯାଇ ଦୁଷ୍ଟମନକୁ ଠେଙ୍ଗେଇ ଦେବ ।

ଋଷିଙ୍କ କଥାଶୁଣି ବାରବାଉ କହିଲ, ହଉ ତାହାହେଲେ ଦିଅ । ଋଷି ଯାଇ ଆଶ୍ରମରୁ ଠେଙ୍ଗା ଦଉଡ଼ି ଦ'ଖଣ୍ଡ ଆଣି ବାରବାଉକୁ ଦେଲେ । ବାରବାଉ ଠେଙ୍ଗା ଦଉଡ଼ି ପାଇ କହିଲ, ସାଧୁଜୀ !

ଠେଙ୍ଗା ବାଡ଼ିର କରାମତି କିମିତି ସତ କି ମିଛ ଏବେ ଦେଖିବା । ଏହାକହି ସେ ଠେଙ୍ଗାକୁ ଧରି କହିଲା ବାଡ଼ା ଏଇ ଚତୁର୍ପଦାକୁ ।

ଏହା କହିବା ସାଙ୍ଗେ ସାଙ୍ଗେ ଠେଙ୍ଗାକୁ ଆଉ ସମ୍ଭାଳେ କିଏ ? ସେଠା ଆକାଶ ମାର୍ଗରେ ସାଏଁ ସାଏଁ ଗର୍ଜିଯାଇ ବାବାଜୀ ପିଠିରେ ବସାଇଲା ଦୁମ୍ ଦାମ୍ । ଠେଙ୍ଗାର ନିର୍ଘାତ ମାଡ଼ରେ ଋଷିତ ପ୍ରାଣମୂର୍ଚ୍ଛା । ଦୌଡ଼ ଦୌଡ଼ କହିଲେ, ଆରେ ଟୋକା ! ଠେଙ୍ଗାକୁ ଥମାରେ, ନୋହିଲେ ଆମେ ମରିଗଲୁରେ । ଏମିତି କହି କହି ପକେଇଲାବେଳକୁ ବୀରବାହୁ କହିଲା ବାନ୍ଧ ସେ ଋଷିକି । କହିମା ମାତ୍ରେ ଦଉଡ଼ିଟା ଯାଇ ଚଉକଷିଆ କରି ଋଷିଙ୍କି ବାନ୍ଧି ପକେଇଲା । ଠେଙ୍ଗା ଦେଲା ନିର୍ଘାତ ପିଠା । ବାବାଜୀ ପିଠା ଖାଇ ବୋବାଳି ମାଳୋ ହୋଇ କହିଲା, ଆରେ ଦେଇମାନ ଟୋକା । ଠେଙ୍ଗାଟାକୁ ଥମାରେ, ନୋହିଲେ ମରିଯିବିରେ । ଅରେ ଠେଙ୍ଗା, ଦଉଡ଼ି ବେଣୁ ନେଇ ଯା ଝଟକେ, ଆଗେ ଠେଙ୍ଗାଟାକୁ ଥମେଇ ଦେ । ଋଷି ଏହିପରି କହିବାରୁ ବୀରବାହୁ କହିଲା, ହଉରେ ଠେଙ୍ଗା ବାଡ଼ି ! ଏଥର ଋଷିଟାକୁ ଛାଡ଼ିଦିଅ । ସେଇଠୁ ଠେଙ୍ଗା ଦଉଡ଼ି ଦୁହେଁ ଆସି ବୀରବାହୁ ପାଖରେ ପହଞ୍ଚିଲେ । ଠେଙ୍ଗା ଦଉଡ଼ି ଓ ବେଣୁଟିକୁ ନେଇ ବୀରବାହୁ ଖଦିକା ଚଳିଆଲେ ।

ସେଠୁ ଆସି ଦେଖିଲା ଭିନପାଦ ଋଷି ବସିଛନ୍ତି । ସେ ସ୍ୱାକୁ ପଚାରିଲେ ଆରେ, ଏ ବେଣୁ ଖଣ୍ଡିକ ତୁ କୋଉଠୁ ପାଇଲୁ । ବଡ଼ ବଢ଼ିଆ ବେଣୁଟି ପାଇଚୁରେ । ଏ ଖଣ୍ଡିକ ମୋତେ ଦେଇଯା । ବୀରବାହୁ କହିଲା, ବାଃ କେଣ୍ଟକଥା କହୁଚ ତ । ମୁଁ କେତେ କଷ୍ଟ କରି ଯାଇ ସ୍ୱର୍ଗରୁ ବେଣୁ ଖଣ୍ଡିକ ଆଣିଛି । ତମକୁ ମାହାଳିଆରେ ଦେଇଯିବି ? ଭିନପାଦ କହିଲେ ନାଇଁରେ ଟୋକା । ତୋତେ ଆମେ ଗୋଟିଏ ଅମୂଲ୍ୟ ମୁଣି ଦେବୁ । ତୁ ବେଣୁ ଖଣ୍ଡିକ ଦେଇଯା । ବୀରବାହୁ କହିଲା ସେ ମୁଣି ନେଇ ମୋର କ'ଣ ହବ ? ଭିନପାଦ

କହିଲେ, ସେ ମୁଣିର କରାମତି ଭୁଡ ଜାଣିନୁ ଟୋକା । ତୋର ଶତ୍ରୁ ଯେବେ ଆସିବେ ତୁ ଯଦି ମୁଣିଟାକୁ ଖୋଲ କହିବୁ, ଯାଇ ଶତ୍ରୁଙ୍କୁ, ତା'ହେଲେ ମୁଣିରୁ ଖାଲି ବଧା ଗୁପୂଡ଼ା ବାହାରି ଶତ୍ରୁଙ୍କ ପିଠିରେ ଦୁମ୍ ଦାମ୍ ବଧା ଗୁପୂଡ଼ା ଦେଇ ଥଣ୍ଡା କରିଦେବେ । ବୀରବାହୁ କହିଲା ହଉ ତାହାହେଲେ ଦିଅ । ଚନ୍ଦ୍ରପାଦ ଋଷି ମୁଣିଟା ଫିଟେଇ ଆଣି ଦେବାରୁ ବୀରବାହୁ ମୁଣିଟାକୁ ଫିଟେଇ କହିଲା, ମାର ଏଇ ବାବାଜୀକୁ । ସେଇଠୁ ଆଉ କି ରକ୍ଷା ଅଛି । ଚନ୍ଦ୍ରପାଦଙ୍କ ପିଠିରେ ଦୁଲୁଦାଲୁ କରି ବସିଲା ବଧା ଗୁପୂଡ଼ା । ଋଷି ମରିଗଲିରେ ମରିଗଲିରେ କହି ଏପାଖରୁ ସେପାଖ ଯାଏ ଗଡ଼ୁଥାନ୍ତି । ଆଉ ପିଠିରେ ପଡ଼ୁଥାଏ ଗୁମୁକା । ଋଷିଙ୍କ କଅଁଟି ସେତେବେଳକୁ ଖରାପ ହୋଇଗଲାଣି । ସେ ମାଡ଼ ଚୋଟରେ କହୁଥାନ୍ତି ହା, ହାଁ, କି କଲୁରେ ଟୋକା । ଆରେ ମାରି ପକେଇଲାରେ । ଆରେ ମୁଁ ବୁଢ଼ାଲୋକ ମରିଯିବିରେ । ଥମା ଥମା ମାଡ଼ଗୋଳ ଥମାରେ, ବେଣୁଟା ନଦେଇ ମୁଣିଟା ନେଇଯା ପଛେ, ଆଗେ ଏ ମାଡ଼ଗୁଡ଼ାକୁ ମୁଣିରେ ପୂର । ବୀରବାହୁ ସେଇଠୁ ମୁଣିଟାର ମୁହଁ ମୁଦି ଆଣିବାରୁ ମାଡ଼ଗୁଡ଼ାକ ଆସି ମୁଣିରେ ପଶିଗଲେ । ଚନ୍ଦ୍ରପାଦ କୌଣସିମତେ ଉଠିବସି ଝାଡ଼ଝୁଡ଼ି ହେଲାବେଳେ କହୁଥାନ୍ତି, ଆ-ଲୋ ବୋପା କି ମାଡ଼ ଇଏ । ବୀରବାହୁ ସେତେବେଳକୁ ଋଷିଙ୍କୁ ଜୁହାରଟିଏ ହୋଇ ଖଣ୍ଡେବାଟ ମୁଣି ଧରି ଚାଲିଗଲେଣି ।

ଠେଙ୍ଗା ବଉଡ଼ ମାଡ଼ମୁଣି ଧରି ବୀରବାହୁ ଚନ୍ଦ୍ରପାଦ ଋଷିଙ୍କ ଆଶ୍ରମରେ ପହଞ୍ଚିବାରୁ ସେ କହିଲେ, ଆରେ ଟୋକା ! ଅର୍ଥ ପାଇଲୁ ? ବୀରବାହୁ କହୁ ନ କହୁ ବଂଶୀଟି ଦେଖେଇ ଦେଲା । ଚନ୍ଦ୍ରପାଦ ଋଷି ବେଣୁ ଦେଖି କହିଲେ, ଆରେ ! ବେଣୁଟି ତୁ କୋଉଠୁ ପାଇଲୁ ? ଏ ଖଣ୍ଡିକ ଆମକୁ ଦେଇଯା । ତା ବଦଳରେ

ଆ ମ ତୋତେ ଗୋଟିଏ ବରୁଡ଼ ବହୁଆ ଦେଉଛୁ ନେଇଯା । ଯେତେବେଳେ ଦୁଷ୍ଟମାନ ଆସିବେ ସେହି କ୍ଷଣରେ ଏ ବରୁଡ଼ ମୁଣିଟାକୁ ଫିଙ୍ଗି ଦେଇ କହିବୁ, ଯାଇ ମାର୍ ।

ଦେଖିବୁ ସେଥିରୁ ଲକ୍ଷ ଲକ୍ଷ ବରୁଡ଼ ବାହାରି ଯାଇ ଅଣ୍ଡାକଣ୍ଡ ଦେଇ ନାଶିବେ ଦୁଷ୍ଟଙ୍କୁ । ଖାତିବାହୁ କହିଲା, କାହିଁ ମୁଣିଟା ଦିଅ ଆଗେ । ଏକଥା ଶୁଣି ବିଶ୍ୱାଦ ଋଷି ଆଶ୍ରମରୁ ମୁଣିଟା ଆଣିଦେବାରୁ ଖାତିବାହୁ କହିଲା, ମୁଁ ଆଗେ ସବୁ ନ ମିଛ ବଡ଼ ଦେଖେ । ଋଷି କହିଲେ ହାଉରେ ବାବା ! ଆମେ ଋଷି ହୋଇ କ'ଣ ପିଲାମାନଙ୍କୁ ଠକେଇବୁ ? ଦେଖ୍ ଦେଖ୍, ଟିକିଏ କରି ଦେଖିନେ । ସେତେ ଖାତିବାହୁ ମୁଣିଟାକୁ ଫିଙ୍ଗିଦେଇ କହିଲା, ମାର ଏହି ବାବାଜୀଙ୍କୁ । ଏତକ କହିବାରୁ ଆଉ କିଏ ଦେଖୁଛନ୍ତି ? ଶହ ଶହ ଶମାଲୋଳ ବରୁଡ଼ ବାହାରିଯାଇ ଲଗାଇଦେଲେ ବିଶ୍ୱାଦ ଋଷିଙ୍କ ଉପରେ ଚୋଟ । ଋଷି ବରୁଡ଼ ମାଡ଼ କେବେ ଖାଇନଥିଲେ । ଏପଟୁ ସେପଟୁ ଋଷିଙ୍କି ଉଲଟେଇ ପାଲଟେଇ ଦେଇ ଫୋଡ଼ ମାରନ୍ତି । ହାଉ ରେ ଯାଏ କୁଆଡ଼େ ? ବୋମାନେ ମାନେ ରଡ଼ ଗୁଡ଼ କହିଲା, ହାରେ ଟୋକା ମୁଣିଟାକୁ ବାନ୍ଧେ । ଆରେ ମାର ପକେଇଲେରେ ବୋଇଲେ, ବାହୁଡ଼ ଦୁହଁଟାକୁ ଦେଇ ଫୋଡ଼ ଛନ୍ଦରେ । ଆଲୋ ବୋଉ, ମରିଗଲିଲେ । ହାଁ, ହାଁ, ଟୋକା ମାହାକଥାରେ ମୁଣିଟାକୁ ବନ୍ଦ କରିଦେଇ ମୁଣିଟା ବାନ୍ଧେ । ମୋର କେଣ୍ଟୁ ଦରକାର ନାହିଁରେ, କେଣ୍ଟୁ ମୁଣି ସବୁ ନେଇ ମୋତେ ବଞ୍ଚା । ବିଶ୍ୱାଦ ଋଷି ଏ କଥା କହିବାରୁ ଖାତିବାହୁ ମୁଣି ବାନ୍ଧି ନେଇ ଆଗେଇଲା । ବରୁଡ଼ ମାଷି ମୁଣିରେ ପଶିବାରୁ ବିଶ୍ୱାଦ ଋଷି ସ୍ୱସ୍ତିପାଇଆ ହୋଇ ହାମୁଡ଼େଇ ହାମୁଡ଼େଇ ଆଖିଲୁହ ଗଡ଼ାଉଥାନ୍ତି, ଏ ବୋଉ ବରୁଡ଼ ମାଡ଼ର [illegible] କ'ଣ ମୋ ମାସକରେ କମିବ ?

ବୀରବାହୁ ସେଠାରୁ ଏକପାଦ ଋଷିଙ୍କ ଆଶ୍ରମରେ ପହଞ୍ଚିବାରୁ ସେ ବୀରବାହୁର କୁଶଳ ପଚାରିଲେ । ବୀରବାହୁ କହିଲା, ଆପଣଙ୍କ କଲ୍ୟାଣରୁ ସବୁ କୁଶଳ । ହେଲେ ବଡ଼ ଜାଗା ବୁଲିଲି, କିନ୍ତୁ ଚାରି ଅଙ୍କର ଅର୍ଥ ଜାଣିପାରିଲି ନାହିଁ । ଏକପାଦ ଋଷି କହିଲେ, ମୁଁ କଳ୍ପତରୁ ବଲ୍କଳ ଦେଉଛି ନେଇଯା, ଯାହାକୁ ମୁଣ୍ଡରେ ଲଗାଇଲେ ପରିଶ୍ରମ ବାଧିବ ନାହିଁ । ଆଜ କୁଆଡ଼େ ଯାଉଛ ଜାଣିପାରିବ, ବୁଲି ଦେଖ । ସେଇଠୁ ବୀରବାହୁ ବଲ୍କଳ ଆଣି ତାଙ୍କୁ ପ୍ରଣାମ କରି ଲେଉଟିଲା ।

ବାହୁବଳ ରାଜେ ପଦ୍ମାବତୀ ପାଖରେ ଯାଇ ପହଞ୍ଚିବାରୁ ସେ ପୁଅକୁ ପାଇ ଖୁସି ହେଲେ । ଖିଆପିଆ ସରିବାରୁ ପୁଅକୁ ହାଲଚାଲ ପଚାରିଲେ । ବୀରବାହୁ କହିଲା, ଚାରି ଅଙ୍କର ଅର୍ଥ ପାଇନାହିଁ, ହେଲେ ସ୍ୱର୍ଗରେ ବୁଲି ଇନ୍ଦ୍ର ଜାଉଣୀକ ବାହାହୋଇ ଆସିଛି । ପଦ୍ମାବତୀ ପୁଅକଥା ଶୁଣି କହିଲେ, ଆରେ ତୁ ଜଣ ବାରଜାଗାରେ ବୁଲି ବାହାପିଆ ହେଲୁଣି କରେ ? ଆରେ ନରଲୋକ ଲୋକ କେଉଁ କୋଉଠି ସ୍ୱର୍ଗକୁ ଯାଇ ଲେଉଟିଛି ଯେ ତୁ ଯାଇଥିଲୁ କହି ମୋତେ ଭୁଲେଇ ଭଲେଇ ଦଉଚୁ ? ବୀରବାହୁ କହିଲା, ଆଚ୍ଛା ମା ! ତୁମର ବିଶ୍ୱାସ ହଉନ ପରି । ମୁଁ ତାର ପ୍ରମାଣ କରି ଦଉଚି ଦେଖ । ପଦ୍ମାବତୀ କହିଲେ, ତାହା ହେଲୁ ତ ହୋଇନୁ କାହିଁ ? ବୀରବାହୁ କହିଲା, ତୁମେ ଆଖିବୁଜ ଥୋଡ଼ାଏ ବସ । ବୋହୂ ଉହ୍ଲାସ ସବୁ ଦେଖିବ । ଏହାକହି ସେ ଖଡ଼ ଗୋଟାଳଟା ଅଣ୍ଟାରୁ କାଢ଼ି ଗୋଟାଏ ଦୋଚାଲି କୋଠାର ଚିତ୍ର ଆଙ୍କିଲା । ପଦ୍ମାବତୀ ଆଖିମୁଦ ବସିଥାଏ । ଏବେ ଚିତ୍ରଆଙ୍କି ଆଖି ମୁଦିଲା । ଅଳ୍ପକ ପାଦେ ହେବେ ଆଖି ଫିଟେଇ ଦେଖିଲା ବଳକୁ ସେମାନେ ଗୋଟାଏ ମାଟିଲ ପଥରର ଦୋଚାଲି କୋଠାରେ ବସିଛନ୍ତି । ପଦ୍ମାବତୀ କହିଲା, କୋଠା ସିନା ଦେଖାଇଲୁ ବୋହୂ କାହିଁ ? ସେଇଠୁ ବୀରବାହୁ ବଂଶୀରେ

ମେଘମାଳା ନା ଧର ଡାକିବାରୁ ଘର କୋଣରୁ ଚୌଦ କର୍ଣ୍ଣିଆ ସୁନ୍ଦର ବୋଦ ଟିଏ ଓଡ଼ଣା ନୁଆଁଇ ପତ୍ନୀବଶଙ୍କ ଜୁହାର ହେଲା । ବୋଦକୁ ଦେଖି ପଦ୍ମାବତୀର ଗୁଡ଼ ଭୁଣ୍ଡେମୋଡ଼ । ବୋଦକୁ ବନ୍ଦାପନା କରି ନେଇ ଭିତର ପୁରକୁ ଗଲା । ସେଠାରେ ଜଣପ୍ରାଣୀ ମନସୁଖରେ କାଳ କାଟିଲେ ।

ଏତିକିବେଳେ ମିଳାବୁ ମେଘମାଳା ଦିନେ ଶାଶୂଙ୍କ ସଙ୍ଗରେ କଥା ହେଲାବେଳେ ଶ୍ୱଶୁରଙ୍କ କଥା ଉଠିଲା । ପଦ୍ମାବତୀ ସେଇ ସବୁ ଘଟଣା ସବୁ କହିବାରୁ ମେଘମାଳା ବୀରବାହୁକୁ କହିଲା, ଏକଥିପାଇଁ ଶାଶୂ ଏତେ କଷ୍ଟ ପାଉଛନ୍ତି । ତମେ ମୋତେ କହୁନା ? ଯାଅ ଆଜ ତମେ ଶ୍ୱଶୁରଙ୍କ ରାଜ୍ୟକୁ ଯିବଟି । ସେଠି ରାଜନଅର ମୁଖରେ ଗୋଟିଏ ତମ୍ବୁ ଖାଞ୍ଜ ରହିବ । ଶ୍ୱଶୁରଙ୍କୁ କହିବ, ମୋ ଶାଶୂ ସେଇ ତମ୍ବୁ ଭିତରେ ଥାଇ ତାର ଅଙ୍କର ଅର୍ଥ ଶୁଣେଇବେ । ମୁଁ ସ୍ୱର୍ଗକୁ ଯାଉଚ । ବୁଢ଼ାବାପାଙ୍କ ବୁଢ଼ାମନ୍ତ୍ରୀଙ୍କ ପତ୍ତର ଜାଣି ଆସିବ । ତମେ ସେଇଠିକି ଶାଶୂଙ୍କୁ ନେଇ ରଖେଇ ମୋତେ ବେଣୁରେ ଡାକଲେ ମୁଁ ଆସି ସେଇଠି ଅର୍ଥ ଶୁଣେଇ ଦେବ । ଏକଥା ଶୁଣି ବୀରବାହୁ ଗୋଟିଏ ଘୋଡ଼ାରେ ଚଢ଼ି ଦେଲା, ଦନ୍ତଡ଼, ମୁଣି ବେଣୁ ଖଡ଼ଧରି ତାମିଲନନ୍ଦ ରାଜ୍ୟଆଡ଼େ ବାହାରିଲା । ମେଘମାଳା ଚାଲିଗଲା ସ୍ୱର୍ଗକୁ ।

ଅନେକ ଜାଗା ବୁଲି ଦେଖି ବୀରବାହୁ ଆସି ତାମିଲ ନଗରରେ ପହଞ୍ଚି ଗୋଟେ ଗୁଡ଼ିଆଣୀ ବୁଢ଼ୀ ଘରେ ଆଶ୍ରୟ ନେଲା । ବୁଢ଼ୀକି କହିଲା, ମାଉସୀ ! ମୁଁ ଜଣେ ବିଦେଶୀ ଲୋକ, ତୋଘରେ ମୋତେ ଟିକଏ ରହିବାକୁ ଜାଗା ଦେ । ମୁଁ ତୋତେ ରୋଜ୍ ଗୋଟିଏ ଟଙ୍କା ଦେବ । ବୁଢ଼ୀ କହିଲା, ହଉ ବାପ ରହ । ମୁଁ ଶାଗ ଭାତ କରି ଗଣ୍ଡାଏ ଖାଇବାକୁ ଦେବ, ହେଲେ ଲୁଣିଆ ଅଲଣା କହିବୁ ନାହିଁ ବାପା । ବୀରବାହୁ ରାଜିହୋଇ ରହିଲା । ଦିନେ ବୀରବାହୁ କହିଲା,

ମାଉସୀ ! ଏ ଦେଶ ରାଜାଙ୍କ ମନ୍ତ୍ରୀ ସାଆନ୍ତର କମିତି ଟିକିଏ ଭେଟ ଦେବ କହିଲୁ ।

ବୁଢ଼ୀ କହିଲା -ମଲା, ଏଇ ଏମିତି କୋଉ ବଡ଼କଥା ଗୋଟାଏ କହୁଛ ପର । ମନ୍ତ୍ରୀଆଣୀ ମୋ ଦୋକାନରୁ ବଉଳ-ଗୁଲୁଗୁଲ ଅର୍ଦ୍ଦଳୀକି ପଠେଇ ନଉଚି । ମୁଁ କହିଦେଲେ ତୁ ଯାଇ ଦେଖା କରିବୁ । ବୀରବାହୁ ବୁଢ଼ୀକି କହିଲା, କ'ଣ କହୁଚୁ ମାଉସୀ ? ମନ୍ତ୍ରୀଆଣୀ ତୋ ବଉଳ-ଗୁଲୁଗୁଲ ମଗାଉଚନ୍ତି ନା ! ବୁଢ଼ୀ କହିଲା, ମୋତେ ତୁ କ'ଣ ଭାବ ପାଇଲୁ କି ପିଲା । ମୋର ଯୋଉ ଭଡ଼ା ପାଗର ବଉଳ ବଡ଼ି, ଆଜ୍ଞାବରମ୍ବର କଣ୍ଟା ବଉଳ, ତା' ସାଙ୍ଗକୁ ଉସୁଣପୁଡ଼ା । ସେଇ ଗ୍ରେଜିରେ ପର ରଜା ଛାଟିଛୁ ବ ଲକ ବୋଲେ । ବୋହୁ ଝିଅଙ୍କ କଥାତ ନଆଉ । ଆଚ୍ଛା ଆଜ ମୁଁ ଖବର ପଠେଇ ଦଉଚି ରହ । ଏହାକହି ବୁଢ଼ୀ ବଉଳ ଟୋକେଇ ଯୋଗାଡ଼ କରି ଟୋକେଇ କାଖେଇ ବାହାରିଗଲା ।

ବୁଢ଼ୀ ଯିବାରୁ ବୀରବାହୁ ଭାବିଲା, ଖୋସାମଦ କରିବାର ଦରକାର କଅଣ ? ମୋ ପାଖରେତ ଅସଲ ଦରବେଇ ଅଛି । ଏହାଭାବି ସେ ବରୁଡ଼ ମୁଣିଟାକୁ ଫିଟେଇ ଦେଇ କହିଲା, ଯାଅ ବରୁଡ଼ଏ, ସୁବାହୁ ରଜା ଆଉ ତାଙ୍କର ଦୁଇ ରାଣୀଙ୍କି ଗଡ଼େଇ ଗଡ଼େଇ ମାରିବ ଯା । ସେଇ ସାଙ୍ଗରେ ରାଜବାଟୀରେ ଯେତେ ଲୋକ ଅଛନ୍ତି ସମସ୍ତଙ୍କୁ କାଉଡ଼ ମାର । ଏତକ କହିବାରୁ ଆଉ କ'ଣ ଥାଏ ଅଛି ? ଲକ୍ଷଲକ୍ଷ ବରୁଡ଼ ପଙ୍‌କମାନ ପଛଉପର ରାଜବାଟୀକୁ ଘେରି ଅନ୍ଧାର କରିଦେଲେ । ରାଜାଙ୍କୁ କେଇଟା ମାରିଲା ଭାଏଁ, କେଇଟା ମାରିଲା ଧାଏଁ । ରାଣୀ ଦି'ଜଣଙ୍କୁ ଏମିତି ଫୋଡ଼ିଦେଲେ ଯେ ସେମାନେ ଲଙ୍ଗଳା-ମୁକୁଳା ହୋଇ, ଲୋ ବାଯାଲୋ ଏଗୁଡ଼ାକ କ'ଣ ହେଲା, ଆହେ ଫୋଡ଼ିଦେଲେ ହେ, କୁଆଡ଼କୁ ଯିବ ଲୋ, ଏମିତି ହୋଇ ଥାଇ ଘରେ ପଶି କବାଟ କଳଦେଲେ । ସେମିତି

ମନ୍ତ୍ରୀଙ୍କୁ ଗୋଡ଼ାଇବାରୁ, ଏଗୁଡ଼ାକ ମାରିଦେଲେ ହେ । ଏଗୁଡ଼ାକ କୋଉ ଅକଳଆ ବରୁଡ଼ ହେ ଏମିତ କହି ଯାଇ ଘରେ ପଶିଲେ । ଆଉ ଲୋକସବୁ ଯେମିତ ଆଗେ ମା'ଙ୍କେ ବାପଙ୍କେ ଡାକୁଥାନ୍ତି । ମନ୍ତ୍ରୀ କହୁଥାନ୍ତି, ଧୂଆଁ, ଧୂଆଁ ଜଳାଅ । ମନ୍ତ୍ରୀଙ୍କ କଥାକୁ ମନ୍ତ୍ର ମଣି ଲୋକ ସବୁ ଯିଏ ଯାହା ପାଇଲା, କୁଟାଠାରୁ କୋଉଠାଏ ଟାଣି-ଓଟାର ଧୂଆଁ କଲେ । ତେଣେ ଧୂଆଁ ଅନ୍ଧାରକୁ ଏଣେ ବରୁଡ଼ ଅନ୍ଧାର । ମନ୍ତ୍ରୀ ବିଚରା ରଜା ରାଣୀଙ୍କ ବଳକ ଦେଖି ବାବୁଡ଼ି କରୁଡ଼ ପଡ଼ ଆଣ୍ଠୁ ଗଣ୍ଠି ଛୁଡ଼େଇ ଦେଲେ । ସେତେବେଳେ ଗୁଡ଼ିଆଣୀ ବୁଢ଼ୀ ଅତରଛୁଆ ହୋଇ ଆସି ଘରେ ପଶି କହିଲା, ପୁଅ ! କବାଟ କଳଦେ'ରେ । ଆରେ ରଜାଘରେ କୁଆଡ଼ୁ ଅକାଳ ବରୁଡ଼ ଆସି ରଜାରାଣୀଙ୍କି ଫୁଲେଇ ମାରିଲେଣି । ଆମ ଘରେ ପଶିଲେ ମୁଁ ବୁଢ଼ୀଲୋକ ମରିଯିବି ।

ସେଇଠୁ ରାଜବାଡ଼ି ବରୁଡ଼ ମୁଣିଟାକୁ ବାନ୍ଧ ଖୋଇବାରୁ ବରୁଡ଼ ମାଡ଼ ବନ୍ଦ ହେଲା । ତହିଁ ଆରଦିନ ବାରବାଡ଼ି ରାଜବାଟୀ ଅଟ୍ଟେ ବୁଲିଯାଇ ଦେଖିଲା 'ବରୁଡ଼ ନିବାରଣ ସମିତି' ଗୋଟିଏ ଗଢ଼ା ହୋଇଛି, ସେଥିରେ ଦଫାଦାରଠାରୁ ଠିକାଦାର ଯାଏ ସଭ୍ୟ ହେଲେଣି । କିଏ ଆସି ପିଠି ଦେଖାଉଛି ତ କିଏ ବେଖାଉଛି ପେଟ । ରଜା ବହୁତ କଷ୍ଟରେ ଆସି ବାଡ଼ି ଗିଳରା ଦେଇ କୁରସିରେ ବସିଲେ । ପିଠି ମୁହଁ ସବୁ ଫୁଲିଯାଇଛି । ମନ୍ତ୍ରୀ କହିଲେ, ହଜୁର ! ସେଗୁଡ଼ାକ ଦଇବ ବରୁଡ଼ । ନୋହିଲେ ସମସ୍ତଙ୍କୁ ସେତେବେଳେ ଗୋଡ଼େଇ ଗୋଡ଼େଇ ଫୋଡ଼ୁଥାନ୍ତି, ମୁଁ ଯୁଦ୍ଧ ଫେରିକରୁଛି ହେଲେ ଗୋଟିଏ 'ବରୁଡ଼' ମୋତେ କାମୁଡ଼ି ବା ନାଇଁ ମାରିନଥାନ୍ତେ ?

ରଜା କହିଲେ, ସବୁ ଗ୍ରହଦୋଷ । ତମର ବୋଧେ ଶନି-ଗୁରୁ ଷଷ୍ଠ ପଞ୍ଚମ ହୋଇଥିବେ । ନୋହିଲେ—ଆରେ ବାବା ନ ଭୟାନକ ଫୋଡ଼ା ସିଏ ? ଏବଳବେଳକୁ ମୋ ଛାତି ଥୁଣି

ହୋଇଛି । ମନ୍ତ୍ରୀ କହିଲେ, ଅସ୍ଥ ଧରନ୍ତୁ । ମୁଁ ତାର ଉପାୟ କରୁଛି ।
ରାଜା କହିଲେ, ତୁରନ୍ତ କର ।

ସେଇଠୁ ମନ୍ତ୍ରୀ ଘୋଷଣା କଲେ, ଆମ ରାଜ୍ୟରେ ଡେଙ୍ଗୁରା ଦେଇ, କୌଣସି ଲୋକ ଯଦି ବଗୁଡ଼ି ପଲ ଆଖି ପିଛୁଳାକେ ଦେଖେଇ ଦେବ ସେ ଦଶହଜାର ଟଙ୍କା ବକ୍‌ସିସ୍ ପାଇବ । ମନ୍ତ୍ରୀଙ୍କର ଏ ଘୋଷଣାକୁ ନାଗରଚୀ ସ୍ୱରଆଡ଼େ ବୁଲି ଶୁଣାଇ ଦେଲା । ଗାଇବାଜୁ ତ ସବୁ ଶୁଣିଛି । ତହିଁ ଆରଦିନ କଚେରୀକୁ ଯାଇ କହିଲା, ମୁଁ ସେ ଘୋଷଣା ଶୁଣି ଆସିଛି । ରାଜା ମନ୍ତ୍ରୀ ପ୍ରଜା ପାଠକସବୁ ଆସ ମୋ ବଗୁଡ଼ି ସୃଷ୍ଟିରେ ଖେଳବାଜ ଦେଖିବ । ଏ କଥାରେ ରାଜାଙ୍କୁ ଅଧେ ଲୋକ ଓ ରାଜା ମନ୍ତ୍ରୀ ଯାଇ କଚେରୀ ଆଗରେ ଉଭା ହେଲେ । ଗାଇବାଜୁ ବଗୁଡ଼ି ମୁଣି ଫିଟେଇ କହିଲା, 'ଯାଅରେ ବଗୁଡ଼ି ଆକାଶରେ ଦଳବାନ୍ଧି ଉଡ଼ିବୁଲ ।' ତା କଥାମାତ୍ରେ କୋଟି ଗ୍ରାମଗୋଳ ବଗୁଡ଼ି ଯାଇ ଆକାଶକୁ ଗ୍ରାସିଦେଲେ । ରାଜା ମନ୍ତ୍ରୀ ଦେଖିଲେ, ଏ ଟୋକା ଖଣ୍ଡକ ତ ବଡ଼ ବିପଦ କଲାବ ? କ'ଣ କରିବା । ମନ୍ତ୍ରୀ କହିଲେ ହଜୁର ! ଗୋଟାଏ ଉପାୟ ଅଛି । ସେଟା ହେଉଛି ଆମ ରାଜ୍ୟର ପଠାଣ ଅଞ୍ଚଳ । ସେ ଅଞ୍ଚଳରୁ ତ ଗୋଟାଏ ପଇସା ଖଜଣା ଆସୁନାହିଁ । ଯିଏ ଯାଉଛି ତାକୁ ସେ କଂଧେଇଗୁଡ଼ାକ ଖଜଣା ନ ଦେଇ ଏକବାରେ ଖତମ କରି ଦଉଛନ୍ତି । ଏ ଟୋକାକୁ ନେଇ ଅଞ୍ଚଳକୁ ପଠାନ୍ତୁ । ସେଇଠୁ ଖଜଣା ଆଦାୟ କରି ଦିଏ ତ । ଆଉ ଆମ ରାଜ୍ୟରେ ଉପଦ୍ରବ ନକରୁ । ନୋହିଲେ ସ୍ୱାରୁ ଦଣ୍ଡ ଦେଲେ କାହାର ରକ୍ଷା ନାହିଁ । ଶାସ୍ତ୍ର କହୁଛି—

'ଲୁବ୍‌ଧମର୍ଥେନ ଗୃଣ୍ଣୀୟାତ୍ ସ୍ତବ୍ଧମଞ୍ଜଳି କର୍ମଣା ।
ମୂର୍ଖ-ଛନ୍ଦୋଽନୁବୃତ୍ତେନ ତଥା ସତ୍ୟେନ ପଣ୍ଡିତଂ ।

ଲୋଭୀ ଲୋକକୁ ଅର୍ଥ ଦେଇ, କ୍ରୋଧୀକୁ କର ଯୋଡ଼ି କରି ମୂର୍ଖକୁ ଜଟିଳ କଥା କହି, ପଣ୍ଡିତଙ୍କୁ ସତକଥା କହି ବଶ କରିବ ।

ଏହାଙ୍କୁ ଏକ୍ଷଣି ଦଶହଜାର ଟଙ୍କା ଦେଇ ଓ ପଠାଣ ଅଞ୍ଚଳର ଖାଡା ପତ୍ର ଦେଇ ବିଦା କରନ୍ତୁ । ଉଜୀରଙ୍କ ମନକୁ କଥାଟା ମାନିବାରୁ ସେ ବୀରବାହୁଙ୍କୁ ଡାକି ଦଶହଜାର ଟଙ୍କା ଦେଇ କହିଲେ, ଯୁବକ ତୁମର ଅସାଧ୍ୟ କାର୍ଯ୍ୟ ସାଧନ କରିବାର ଦେଖି ଆମେ ଖୁସି ହୋଇ ତୁମକୁ ସୁଖରେ ରହିବା ଓ ଆମର ମିତ୍ର ହେବାପାଇଁ ଆମ ରାଜ୍ୟର ଗୋଟିଏ ଅଞ୍ଚଳ ଗୁଡ଼ି ଦେଉଚୁ । ତୁମେ ସେଠାରୁ ଖଜଣା ଆଦାୟ କର ନିଅ । ଏହା କହି ପଠାଣ ଅଞ୍ଚଳର ଖାଡାପତ୍ର ଓ ଟଙ୍କା ବୀରବାହୁଙ୍କୁ ଦେଇ ବିଦା କଲେ ।

ବୀରବାହୁ ଖାଡାପତ୍ର ଓ ଠେଙ୍ଗା ଦଉଡ଼ି ମୁଣିଟିକି ଧରି ଚହିଁ ଆରଦିନ ଯାଇ ପଠାଣ ଅଞ୍ଚଳରେ ପହଞ୍ଚିଲା । ମୁଖିଆ ପଠାଣଙ୍କୁ ଡାକି କହିଲା, ମୁଁ ଆଜିଠାରୁ ଏ ଅଞ୍ଚଳରେ ମାଲିକ ହୋଇଛୁ । ଯେତେ ଦିନର ବାହାର ବକେୟା ଖଜଣା ଅଛି, ସବୁ ଦେଇ ଆସ । ସେମାନେ କହିଲେ ହଉ, ଆଜି ରାତିକି ଏଇଠି ରହନ୍ତୁ । କାଲିକି ଦବା, ଏହାକହି ସେମାନେ ବୀରବାହୁଙ୍କୁ ଗୋଟିଏ ଘରେ ଖେଷେଇ କରି ଖାଇ ରହିବାକୁ ସବୁ ଯୋଗେଇ ଦେଲେ । ବୀରବାହୁ ରୋଷେଇ କରି ଖାଉଚି, ଏଇବେଳେ ବାହାରେ ହଇହଲା ଶୁଣା-ଗଲା । ହାଲ୍ କ'ଣ ଜାଣିବାକୁ ବୀରବାହୁ ବାହାରି ଆସି ଦେଖିଲା ପିମ୍ପୁଡ଼ି-ଦାଳ ପରି ମିଆଁ ଗୁଡ଼ାଙ୍କର ଧାଡ଼ି ଲାଗିଛି । ତୁଣ୍ଡ କଟୁରି ଧରି କଂସେଇମିଆଁ ଘରଟାକୁ ଘେରିଛନ୍ତି । ଆଗୁଆ ମୌଲବୀ ଦାଢ଼ୀରେ ହାତ ବୁଲେଇ କହୁଛନ୍ତି, ମାର ଶାଲେକୁ । ଲୁଙ୍ଗି ଟେକି ଠେଙ୍ଗା ବୁଲଉଥାନ୍ତି ଢେଙ୍ଗା ମିଆଁ । ଦଙ୍ଗା କରି ମାରି ଦେବାକୁ ତିଆର । ବୀରବାହୁଙ୍କୁ ଯେମିତି ବାହାରିବାର ଦେଖିଲେ ଗୋଟାଏ ନୁରିମିଆଁ କଂସେଇ ଚୋକା ଲଠିପିଟା କରିବାକୁ ଆଗେଇ ଆସିଲା । ପଛରୁ ମୌଲବୀ କହିଲେ, ଶାଲେକୁ ଖତମ୍ କରଦୋ, ଅନ୍ନପୁଟି ଲେଆଓ । ସେଠୁ ବୀରବାହୁ କହିଲା, କ'ଣରେ ମୋ ଅନ୍ନପୁଟି

ନବାକୁ ଆସିଚ ? ଆଚ୍ଛା ରୁହ ଅନ୍ୟପୁଟି କାଢ଼ ଦଉଚ । ଏହା କହି ସେ ବୁଧା ମୁଣିଟାକୁ ଫଟେଇ ଠେଙ୍ଗାକୁ ଧରି କହିଲା, ଯାଅ ଏଇ ଦୁସ୍‌ମନଙ୍କୁ ବଦେଇ ଦଅ । ବରୁଡ଼ି ମୁଣି ଫିଟେଇ କହିଲା, ଚଳେଇ ଦଅ ମୌଲବୀଙ୍କୁ ଫୋଡ଼ା ଫୋଡ଼ ।

ଏମାନେ ତ ହୁକୁମ୍‌କୁ ଅନେଇଛନ୍ତି । ଯେମିତ ଅର୍ଡ଼ର ହି ଧାଇଲେ ଆଉ ସମ୍ଭାଳେ କିଏ ? ମିଆଁଙ୍କ ଉପରେ ଖୁନ୍ଦା ବୁଧା ସ୍ବଫୋଡ଼ା ଲଗାଇଠା ବୃଷ୍ଟି ହେଲା । ଠେଙ୍ଗା ଦେଲା ନର୍ଘାତ ପିଟା । ଆକସ୍ମିକ ମାଡ଼ ଖାଇ କଂସେଲ ମିଆଁ ଲୁଙ୍ଗି ପାଇଜାମା ଖସିପଡ଼ିବ ଆରେ ବେଇସ୍ତା ମାର୍‌ଗୟାରେ, ମେରି ଜାନ୍ ଚଲଯାତାହେ, ଏମିତ ନାନା କଣ୍ଠା ଝୁଣ୍ଟାରେ ଗଡ଼ାଗଡ଼ ଦେଲେ । ବରୁଡ଼ ଦଳ ଫୋପାଡ଼ ହେଲେ ମୌଲବୀକୁ । ଥୋଡ଼୍ ମୋଡ଼ିବାକୁ ବେଳ ନାହିଁ । ବରୁଡ଼-ଗୁଡ଼ାକ ହୋଲ୍ ନାହୁଡ଼ ଦୁଇଆଡ଼ ଦେଇ ଫୋଡ଼ୁଛନ୍ତି । ମୌଲବୀ ଲଙ୍ଗଳା ମୁକୁଟା ହୋଇ ଡାକୁଛନ୍ତି, ତୋବା ତୋବା । ବାରବାଟୁ କହୁଛନ୍ତି, ଲେ ମଜା । ଆହେ କାଜୀସାହେବ ! ମେରେଜାନ୍ ବଖ୍‌ଦେଓ । ମେ ଲୋକ୍ ବକେୟା ଖଜଣା ସବୁ ଦେ'ଗା । ଏହାଶୁଣି ବାରବାଟୁ ତା'ର, ବରୁଡ଼ ମୁଣି ଦୁଇଟାକୁ ବାନ୍ଧ ଠେଙ୍ଗାଟାକୁ ବନ୍ଦ କଲା । ମିଆଁ ଗୁଡ଼ାକ କଏ ଲଙ୍ଗଳା କଏ ମଇଳା କଏ ବଦଳା ଲୁଙ୍ଗି ପିନ୍ଧି ଘରଆଡ଼େ ପଳେଇଗଲେ । ତହିଁ ଆରଦିନ ସକାଳେ ଦୁ'ସ୍ତ୍ରୀ ଜଣ ମୌଲବୀ ଆସି କହିଲେ, କାଜୀ ! ଆମ ଖଞ୍ଜଣା ଗଣ୍ଡାକ ହିସାବ କରି ନଅନ୍ତୁ । ଆଉ କାଲି ରାତିରେ ଯୋଉ ସାଲେ ଲୋକ୍ ଆସି ଥଣ୍ଡା ହୋଇ ଯାଇଛନ୍ତି । ତାଙ୍କ ବାକୀ ହାଲ୍ ଓଟେର ଖଞ୍ଜଣା ବୁଝି ନଅନ୍ତୁ । ଆଉ ଥୋଡ଼ା ଦମାକ୍‌ଓ୍ୟାଲା ଅଛନ୍ତି ସେଗୁଡ଼ାଙ୍କର ବକାୟା ଖଞ୍ଜଣା ନେଇ ନଅନ୍ତୁ । ସାଲେ ଲୋକ୍ ଦଙ୍ଗା କରନେ ମାଗତା । ମଜଲିସ ଖାନେକୁ ବସିଛନ୍ତି ?

ବୀରବାହୁ ଏମାନଙ୍କର ବାକି ଖଞ୍ଜଣା ଆଦାୟ ନେଇ କହିଲା, ଯେଉଁମାନେ (ଖଞ୍ଜଣା) କରେସ୍ତା ଦେଲେ ସେମାନେ ଏକପାଖିଆ ହୋଇ ରହନ୍ତୁ । ଏମିତି କହିବାରୁ ଦେଲାବାଲା ଅଲଗା ହେଲେ । ଅଦିଆ ମିଆଁଙ୍କୁ ବାନ୍ଧି ଆଣିବାକୁ ବୀରବାହୁ ଦଉଡ଼ି ଠେଙ୍ଗା ପଠାଇ ଦଉଡ଼ିରେ ବାନ୍ଧି ପିଟି ରାଜାଘରକୁ ନେଇଗଲା । ସେମାନେ କରେସ୍ତା ଖଞ୍ଜଣା ଶଗଡ଼ରେ ଲଦି ରାଜାଙ୍କ ପାଖକୁ ନେଇଗଲେ । ଯୋଡ଼ ଯୋଡ଼ ବନ୍ଧାଥିବା ପଠାଣଙ୍କୁ ଦେଖି ରାଜା ମନ୍ତ୍ରୀ ଅବାକ୍ ହେଲେ । ବୀରବାହୁକୁ କହିଲେ, ଟଙ୍କା ରଖି ମିଆଁଗୁଡ଼ାକୁ ଫିଟେଇ ଦିଅ । ବୀରବାହୁ ଫିଟେଇ ଦବାରୁ ସେମାନେ ଫି ବର୍ଷ କରେସ୍ତା ଦେଇ ଯିବାକୁ କବୁଲ କରିଗଲେ ।

ବୀରବାହୁର ଏପରି କାର୍ଯ୍ୟ ଦେଖି ମନ୍ତ୍ରୀଙ୍କର ଭାରି ଜଳେଣି ପଡ଼ିଗଲା । ବୀରବାହୁକୁ ମାରି ନ ପାରିଲେ ଏ ରାଜ୍ୟରେ ରହିବା ଅସମ୍ଭବ ଭାବି ରାଜା, ମନ୍ତ୍ରୀ ହସ୍ତର କରି ବୀରବାହୁକୁ ଡାକେଇ କହିଲେ, ଦେଖ । ତମେତ ବୀର ପୁରୁଷ, ତୁମକୁ କିଛି ଅସାଧ୍ୟ ନାହିଁ । ବୁଢ଼ା ରଜାଙ୍କର ବର୍ଷିକିଆ ଶ୍ରାଦ୍ଧ ପଡ଼ୁଛି । ଆମକୁ ଦଶସେରେ ବାଘଦୁଧ ଆଣି ଦିଅ । ବୀରବାହୁ ଶୁଣି ଆଶ୍ଚର୍ଯ୍ୟ ହେଲା । କହିଲା, କେହି କେବେ ବାପ ଅଜାକାଳେ ବାଘଦୁଧ ଦେଇ ଶ୍ରାଦ୍ଧ କରିଛି ନା ଆପଣ କରିବେ ? ଆଚ୍ଛା ମୁଁ ଦେଖାଯାଉ । ଏହା କହି ଘରକୁ ଆସି ଗଣ୍ଡାଏ ଖାଇ ତା ମାଲ ମସଲା ମୁଣିଧରି ବଣକୁ ଗଲା । ସେଠାରେ ଦଉଡ଼ି ଠେଙ୍ଗାକୁ କହି ପଠାଇଲା, ଯାଅ ଏ ବଣରେ ଯେତେ ଦୁଧିଆଳ ବାଘୁଣୀ ଅଛନ୍ତି ସବୁଗୁଡ଼ାକୁ ବାନ୍ଧିଆଣ । କହିବାମାତ୍ରେ ଠେଙ୍ଗା ଦଉଡ଼ି ଯାଇ ଅଣ୍ଡିରି ବାଘେ ମାଈ ବାଘଙ୍କୁ ଚଉକସିଆ କରି ବାନ୍ଧି ବଣରୁ ନେଇ ଆସିଲେ । ରାତି ପାହିଲା ବେଳକୁ ବୁଢ଼ୀଆଣୀ ଘର ଆଗରେ ବାଘୁଣୀଏ ଘାଉଁ ଘାଁ ରଡ଼ି ଛାଡ଼ୁଛନ୍ତି । ତାଙ୍କୁ ଦେଖି ବୁଢ଼ୀ ତ କାନରେ ଆଙ୍ଗୁଠି ପୂରେଇ ଏ ଦେଁ ପାଟି

କରି ଘରେ ପଶିଲା । ସହର ଲୋକେ ବାଘ ବହୁତ ଦେଖି କବାଟ କଳାଟ ଦେଲେ । ବୀରବାହୁ ଆଠଖଣ୍ଡ ବାଘୁଣୀଙ୍କୁ ବାନ୍ଧି ନେଇ ରଜା-ଦ୍ୱାରେ ହାଜର ହୋଇ ଖବର ଦେଲା, ରଜାଙ୍କୁ ଡାକ, ଆସି ବାଘ ଦୁଧ ନେବେ ।

ରଜା ତ ବୀରବାହୁ ନ ପାରି ପଳେଇଲା ଭାବି ମନ୍ତ୍ରୀ ସଙ୍ଗରେ ପଶା ଖେଳୁଥାନ୍ତି । ଖବର ପହଞ୍ଚିବାରୁ ସେ ବାରଣ୍ଡା ଉପରକୁ ଆସି ଦେଖିଲେ, ବୀରବାହୁ ପଛରେ ବାଘ ଗୋଠ ବନ୍ଧା ହୋଇ ରହିଛନ୍ତି । ମନ୍ତ୍ରୀ ଦେଖି ତାଟକା ହେଲେ । ରଜାଙ୍କର ତ ତାହା ଦେଖି ତାଳୁପାଏ ଶୁଖିଗଲାଣି । ମନ୍ତ୍ରୀ, ବୀରବାହୁକୁ କହିଲେ, ତୁମେ ଦୁହିଁ ଦବାର କଥା ଯେ ? ବୀରବାହୁ କହିଲା, ହଉ ହଣ୍ଡା ଗଣ୍ଡା ପଠେଇ ଦିଅ । ମହନ୍ତେ ସରକ ବାଘୁଣୀ ଦୁଧ ଦୁହିଁ ଦେବାରୁ ରଜା କହିଲେ, ଆଉ ଆମର ଲୋଡ଼ା ନାହିଁ । ଏଗୁଡ଼ାଙ୍କୁ ନଗର ପାଖଆ କଣ ବଣରେ ଛାଡ଼ିଆସ । ନୋହିଲେ ସବୁ ତମାମ ଉତ୍ପାତ କରି ଖୋଇ ଗାଈ ଖାଇଯିବେ । ତହୁଁ ବୀରବାହୁ ବାଘୁଣୀଙ୍କୁ ବଣରେ ଛାଡ଼ି ଆସିଲା ।

ଦିନେ ଗୁଡ଼ଆଣୀ ବୁଢ଼ୀ ଆସି ବୀରବାହୁକୁ କହିଲା, ପୁଅ ! ତୋତେ ଡରି ରଜା ଆଜ ହାତୀଘୋଡ଼ାଙ୍କୁ ନେଇ ସ୍ୱଇଜ ଗୃହ ପଳାଉଛନ୍ତି । ତୁ ଏମିତିଆ ସଇଜ ଛଡ଼ା କାମ କଲୁ କାହିଁକି ? ବୀରବାହୁ କହିଲା, ସେ'ତ ଯାହା ମାଗିଲେ ଆଣି ଦେଲି । ଦୋଷ କ'ଣ ? ବୁଢ଼ୀ କହିଲା, ଯେମିତି ଦେମିତିଆ ପଣ ଦେଖେଇ ପଣ ପାଇ ବାଘପଲ ଧରି ଆଣିଲୁ, ଆଉ କ'ଣ ରଜା ରହନ୍ତେ ? ସେଇଥି ପାଇଁ ପଳାଉଛନ୍ତି ସେ । ସେଇଠୁ ବୀରବାହୁ ଦଉଡ଼ ଖଣ୍ଡକୁ ପଠେଇ ଦେଲା, ଯାଅ ସୁବାହୁ ରଜାଙ୍କୁ ବାନ୍ଧି ଆଣ । ସଙ୍ଗେ ସଙ୍ଗେ ଦଉଡ଼ି ଲମ୍ବ ହୋଇଯାଇ ପଳାଉଥିବା ରଜାଙ୍କୁ ବାନ୍ଧି ଆଣି ରାଜପୁରରେ ହାଜର କଲା । ତାଙ୍କୁ ଦେଖି ବୀରବାହୁ ପଚାରିଲା, ସ୍ୱୈରପର ଲୁଚି

ପଳାଉଥିଲ କୁଆଡ଼େ ? ରାଜା ଲଜ୍ଜାରେ ମୁହଁପୋତି କହିଲେ— ବୀରପୁରୁଷ ! ତୁମେ କାହାପୁଅ ମୁଁ ଜାଣେନାହିଁ । ତୁମେ ମୋ ରାଜ୍ୟ ନେଇ ମୋତେ ଛାଡ଼ିଦଅ ।

ଏକଥା ଶୁଣି ବୀରବାହୁ ମୁହଁରେ ରୁମାଲ ଯାକି ହସି ହସି କହିଲା ମୁଁ ତୁମରି ପୁଅ । ମୋ ନାଁ ବୀରବାହୁ । ମୋ ମା ପଦ୍ମାବତୀ । ପେଟରେ ମୁଁ ଥିବାବେଳେ ତାକୁ ବିନା ବିଗ୍ରହରେ ଘରୁ ତଡ଼ି ଦେଇଥିଲ । ସେଇ ପାପର ଫଳ ଆଜି ଫଳିଲା । ଏହା କହି ସେ ରଜାଙ୍କ ବନ୍ଧନ ଖୋଲି ଦେବାରୁ ରଜା ଦୌଡ଼ି ଯାଇ ତାକୁ କୁଣ୍ଢେଇ ଧରିଲେ ଓ ତା ମୁହଁରେ ଚୋକ ଦେଲେ । ବୀରବାହୁ ବାପାଙ୍କୁ ଦଣ୍ଡ ପ୍ରଣାମ କଲା । ରଜା କହିଲେ, ତୋ ମା ସଞ୍ଜା । ସେ କେଉଁଠି ଅଛି ଏଇଲାଗେ ସୁଆରି ନେଇ ତାକୁ ଘେନି ଆସିବୁ ଯା । ଏହା ଶୁଣି ବୀରବାହୁ କହିଲା, ମୋ' ମା'ଙ୍କୁ ଯେଉଁ ବାରଟି ଅଙ୍କର ଅର୍ଥ ପଚାରିଥିଲ ସେ ସେହି ଅର୍ଥ କହି ଘରକୁ ଆସିବେ । ସେଥିପାଇଁ ଗୋଟିଏ ଅଲଗା ତମ୍ବୁଘର କରିଦିଅ । ରଜା ତତ୍‌କ୍ଷଣାତ୍ ତମ୍ବୁଘର ପାଇଁ ଲୋକ ଲଗାଇ ଦେଲେ । ବୀରବାହୁ ସୁଆରି ନେଇ ପଦ୍ମାବତୀକ ଆଣିବାକୁ ଗଲା ।

କହୁଦିନ ବାଦେ ଅସ୍ତ୍ରରବି ମଣ୍ଡଣି ସବାରିରେ ପଦ୍ମାବତୀକ ବସାଇ, ନିଜେ ହାତୀରେ ଚଢ଼ି ବୀରବାହୁ ପହଞ୍ଚିଲା । ପଦ୍ମାବତୀ ଆସି ତମ୍ବୁଘରେ ଯାଇ ରହିଲା । ହଜବା ରାଣୀଙ୍କ ଦେଖିବା ଓ ବାର ଅଙ୍କର ଅର୍ଥ ଶୁଣିବାକୁ ରାଇଜଯାକର ଲୋକ ଏକୁଠିଲ ହେଲେ । ତହିଁ ଆରଦିନ ବୀରବାହୁ ତମ୍ବୁଘର ଭିତରକୁ ଯାଇ ଯେମିତି ମେଘମାଳା ନାଁ ଧରି ବେଣୁ ବଜାଇଛି, ମେଘମାଳା ସେଇ ଘର କୋଣରୁ ବାହାରି ଶାଶୁଙ୍କୁ ଜୁହାରି ହେଲା । ସ୍ୱାମୀ, ସ୍ତ୍ରୀ ଓ ଶାଶୁ ମିଶି ଦୁଃଖସୁଖ ହେଉଥିବାବେଳେ ରଜା ମନ୍ତ୍ରୀ ଆସି ତମ୍ବୁଘର ପାଖରେ ପହଞ୍ଚିଲେ । ବୀରବାହୁ କହିଲା, ପାଖ ତମ୍ବୁଘରକୁ ବଡ଼ମା

ଢ଼ି'ଜଣଙ୍କୁ ଆଣନ୍ତୁ । ସେମାନେ ପଚାରୁଥିବା ବାର ଅଙ୍କର ଅର୍ଥ ମୋ ମା' କହିବେ ସେ ଶୁଣିବେ ।

ତହୁଁ ରଜା ବଉଗଣୀ ଢ଼ି'ଜଣଙ୍କୁ ପାଖ ତମ୍ବୁଘର ଅଣାଇ ରଖାଇବାରୁ, ପରଦା ପାଖକୁ ପଦ୍ମାବତୀ ଆସି ବସିଲ । ମେଘମାଳା ଶାଶୂ ପାଖରେ ବସି ବୃହସ୍ପତିଙ୍କଠାରୁ ବୁଝି ଆସିଥିବା ଅର୍ଥ ତାକୁ କହି ଦଉଥାଏ । ପଦ୍ମାବତୀ କହିଲ, ରଜା, ରାଣୀ ଓ ପାତ୍ର ମନ୍ତ୍ରୀ ସମସ୍ତେ ଶୁଣ । ଯେଉଁ ବାର ଅଙ୍କର ଅର୍ଥ କହି ନ ପାରିବା ହେତୁ ମୁଁ ଏ ରାଜପୁରରୁ ତଡ଼ାପାଇ ଯାଇଥିଲି, ତାହାର ଅର୍ଥ ଏବେ କହୁଛି— ଏକ ଯେ ଅଣାକାର (ବ୍ରହ୍ମ) । ଦୁଇ ଯେ ପ୍ରକୃତି ଓ ପୁରୁଷ (ସୃଷ୍ଟିକାରକ) । ତିନି ଯେ ଭୂତ ଭବିଷ୍ୟ ଓ ବର୍ତ୍ତମାନ (କାଳ) ବା ସତ୍ତ୍ୱ, ରଜ, ତମ, ଗୁଣର ମାଲିକ ବ୍ରହ୍ମା, ବିଷ୍ଣୁ, ମହେଶ୍ୱର । ଚାରି ଯେ ଋକ, ଯଜୁ, ସାମ ଓ ଅଥର୍ବ (ଚାରିବେଦ) । ପାଞ୍ଚ ଯେ ପଞ୍ଚ ମହାଭୂତ କ୍ଷିତି, ଅପ, ତେଜ, ମରୁତ ଓ ବ୍ୟୋମ । ଛଅ ଯେ ଷଡ଼ଋତୁ ଗ୍ରୀଷ୍ମ, ବର୍ଷା, ଶରତ, ଶୀତ, ହେମନ୍ତ ଓ ବସନ୍ତ । ସାତ ଯେ କ୍ଷୀର, କ୍ଷାର, ଲବଣାଦି ସାତ ସମୁଦ୍ର । ଭୃଗୁ, ଅଙ୍ଗିରାଦି ସପ୍ତଋଷି । ଆଠ ଯେ ଅଷ୍ଟକୁଳାଚଳ । ଅଣିମା, ଲଘିମାଦି ଅଷ୍ଟାଙ୍ଗ ଯୋଗ । ନଅ ଯେ—ରବି, ସୋମ, ମଙ୍ଗଳାଦି ନବଗ୍ରହ । ଦଶ ଯେ ଦଶଦିଗ ପାଳ । ଏଗାର ଯେ ଏକାଦଶ ରୁଦ୍ର । ବାର ଯେ ଦ୍ୱାଦଶ ସୂର୍ଯ୍ୟ । ଏହା ହେଉଛି ବାରଅଙ୍କର ଅର୍ଥ । ଏମନ୍ତ ଅର୍ଥଶୁଣି ଲୋକେ ଧନ୍ୟଧନ୍ୟ ପଦ୍ମାବତୀ ଓ ବୀରବାହୁ ବୋଲି କହାହେଲେ । ସୁବାହୁ ରଜା ଅନେକ ବାଣ ଟେଣ୍ଟଷଣୀ ଲଗାଇ ପୁଅ, ବୋହୂ ଓ ଝିଅମାନଙ୍କୁ ଘରକୁ ନେଲେ । କିଛିଦିନ ବାଦେ ବୀରବାହୁକୁ ଯୁବରାଜ ପଦ ଦେବାରୁ ବଉଗଣୀ ଢ଼ି'ଜଣ ହିଂସାରେ କ୍ଷୟ ହୋଇ ମରିଗଲେ । ତାଙ୍କୁ ଯେଉଁ ଜାଗାରେ ସମାଧି ଦିଆଗଲା, ସେହି ଜାଗାରେ ସଞ୍ଚ ଖମ୍ବ ବାରଟି ଉଠାଇ ସେଥିରେ ଏକଠାରୁ ବାରଯାଏ ଅଙ୍କ ଲେଖି

ଦେଇଛନ୍ତି ସୁବାହୁ ରଜା । ଏବେ ବୁଝିଲୁ ଅବୋଲକରା ତାର ସେମିର ଟଙ୍କ କଥା । ଏହା କହି ଗୋସେଇଁ ଝିଅପିଆର ସେ ଗାଡ଼ କଲେ । ଅବୋଲକରା ପଞ୍ଚଉ ପକାଇ ଧୋଉଥାଏ । ଏ ଗଳ୍ପଟି ମୋ ମାଇଁ ପିଅସ୍ତ ମୋତେ ଶୁଣେଇଥିଲେ ।

—*—

## କାଠ ଘୋଡ଼ା ପାଣି ପିଆ କଥା

ବାରିଖମ୍ବ କଥା ଶେଷ କରି ତର୍ଦ୍ଧି ଆବନ୍ଦନ ଗୋସେଇଁ ଅବୋଲକରା ଡିତେହି କରୁଛନ୍ତି ଏିବାପରେ କନୌଜ ବୋଲି ଗୋଟିଏ ଦେଶ ଥିଲା । ସେ ଦେଶରେ ପଡ଼ାଇବାବେଳକୁ ଦିନ ଭର ଉଚ ହେଉଥାଏ । ବେଳ ଅଣ୍ଟର ହେବାର ଦେଖି ଗୋସେଇଁ କହିଲେ, ଆରେ ଅବୋଲକରା ଏଇଠି ରହିଯିବା । ଅବୋଲକରା ସେଠି ଦେଉଳ ନେଢ଼ାକୁ ଯାଇ ଗଣ୍ଡିଲଟଣ ଖୋଳିବାରୁ ଗୋସେଇଁ କହିଲେ, ଏକବାରେ କହି ଦେଖେଇ ହଣ୍ଡା ଆଣି ଗୋଡ଼ ହାତ ଧୋଇବୁ ଯା । ମୁଁ ସ୍ନାନସାରି ଆସି ଚୁଲି ତଉଳା କରୁଛି । ଏହା କହି ଗୋଟିଏ ଟଙ୍କା ଦବାରୁ ଅବୋଲକରା ସହରକୁ ଗଲା । ବଜାରରୁ ସଉଦା ପତ୍ର କିଣି ଟିକଏ ବୁଲାବୁଲି କରୁ କରୁ ଦେଖିଲା, ରଜାଘର ପୁରୁଣା ସିଂହଦ୍ୱାର ପାଖରେ ଗୋଟାଏ କାଠଘୋଡ଼ା ପାଣି କୁଣ୍ଡରେ ମୁହଁ ରଖି ଥୁଆ ହୋଇଅଛି । ସେ ଘୋଡ଼ାଟାର ପେଟ କଣ୍ଟ ଶବ । ତାକୁ ଦେଖିଆସି ଅବୋଲକରା କହିଲା, ଗୋସେଇଁ ! ମୁଁ ତ ଆଜି ଏ ଜାଗାରୁ ଯିବି ନାହିଁ ? ଗୋସେଇଁ ଅବାକ୍ ହୋଇ ପଚାରିଲେ, ଆରେ ! ପୁଣି କ'ଣ ହେଲା ତୋ'ର, କୋଉଠି କଛି ଦେଖିଲୁ ନା କଅଣ ?

ଅବୋଲକରା କହିଲା, ଗୋସେଇଁ ! ମୁଁ ବଜାରକୁ ଯାଇ ଦେଖିଲି, ରଜବାଟୀ ସାମନାରେ ଗୋଟିଏ ପାଣି କୁଣ୍ଡରେ ମୁହଁ ରଖି

କାଠ ଘୋଡ଼ାଟିଏ ତିଆରି ହୋଇଛି । ଘୋଡ଼ାଟି ଏମିତି ତିଆରି ଯେ ଦେଖିଲେ ସଜୀବ ପରି ଦିଶୁଛି । କେବଳ ଘୋଡ଼ାଟାର ପେଟ ଫଟା । ଏ କଥା ଯଦି ନ କହିବ ମୁଁ ଆଜି ବାବାଙ୍କୁ ତା'ର କାରଣ ପଚାରି ବୁଝିବାକୁ ରହିବ । ତା କଥା ଶୁଣି ଗୋସେଇଁ ଭାବିଲେ ଆଗ୍ରହ ବେକୁବ୍ ହେଲି । ଏ ଟୋକା ଯୋଉଠି ଯାହା ଦେଖିବ ଆସି ପଚାରିବ, କେତେ କହିବ ? ପୁଣି ଭାବି ବସିଲେ, ହଉ ଆଣିଥାଇଁ ଯେତେବେଳେ ମନୁଆଁଟା ନଗଲେ ହଇ ହୁଣରେ ପଡ଼ିବା କଥା । ଏହା ଭାବି କହିଲେ, ଗାଧୋଇ ଥଣ୍ଡା ଜର ତୋ ମଥା, ଶୁଣ ଅବୋଲକରା ସେ କଥା ।

ଆଗ କାଳରେ ମନ୍ମଥ ଦେବ ବୋଲି ଜଣେ ରାଜା ଏ ଦେଶରେ ଥିଲେ । ତାଙ୍କ ପୁଅ ନାଁ ମଳୟବସନ୍ତ । ସେ ଯୁବରାଜ ପଦ ପାଇ ରାଜ୍ୟର ହାଲଚାଲ ଥୋଡ଼ା ବୁଝାସୁଝା କରୁଥାଏ । କାହାର କିଛି ନ୍ୟାୟ ବିଚାର ଅଚ୍ଛିଡ଼ା ହେଲେ ସେ ଆସି ଯୁବରାଜ ପାଖରେ ପହଞ୍ଚେ । ମଳୟବସନ୍ତ ତାହା ନିଷ୍ପତ୍ତି କରିଦିଏ । ଦିନେ ସେ ଦେଶର ସୁନାରି ଜଣେ କୁଆଡ଼େ ମାଇ ଯାଉ ଖରା କାଟିବାକୁ ଗୋଟିଏ ବରଗଛ ମୂଳରେ ବସିଛି, ଏଇବେଳେ ଅନ୍ୟଆଡ଼ୁ ଜଣେ ବଢ଼େଇ ଆସି ସେଇ ଗଛ ମୂଳରେ ବସିଲା । ଦୁଇ କାରିଗର ଏକାଠି ହେବାରୁ ସୁନାରି ପଚାରିଲା ଭାଇ ! ତୁମେ କୋଉ ଜାତି ? ନ କହି ନ ବୋଲି ମୋତେ ଛୁଇଁ ଦେଲ ଯେ । ବଢ଼େଇ କହିଲା, ତୁମେ କୋଉ ଜାତି ଆଗେ କୁହ ! ବଣିଆ କହିଲା, ମୁଁ ସୁନାରି ବଣିଆ । ବଢ଼େଇ କହିଲା ମୁଁ ସୂତ୍ରଧର ବଢ଼େଇ ।

ସୁନାରି କହିଲା, ବଢ଼େଇ ହୋଇ ମୋତେ ଛୁଇଁଦେଲ ? ବଢ଼େଇ କହିଲା, ତୁ ଏମିତି କୋଉ ବଡଜାତି ଯେ ଛୁଆଁ ଲାଗିଲା ? ହ୍ୟାପୋ ତୁମେ ବଣିଆଗୁଡ଼ା ବ୍ରହ୍ମାଙ୍କ ପାଦରୁ ଜାତ । ସୁନାରୀର

ମହାପାପୀ ? ସକାଳୁ ଉଠି ତୁମ ମୁହଁ ଦେଖିଲେ ସାରାଦିନ ଅଯଶ କୁଫଳ । ଶିବ ବର୍ଣ୍ଣନ କଲେ ପାପ କଟେନା । ଅଲକ୍ଷଣୀଆ ? ଆମେ ବିଶ୍ୱକର୍ମା ପୁଅ । କୁହିଁଲୁ କହିଦେଲୁ ? ସୁନାରି କହିଲା, କଣ କହିଲୁ ତୁ ବଡ଼ ? ଆମେ ଗହଣା କରିଦେଲେ ବ୍ରାହ୍ମଣୀଠାରୁ ବ୍ରାହ୍ମଣୀଯାଏ କେକ, ମୁଣ୍ଡ, ନାକରେ ଝୋଲୁଚନ୍ତି । ଠାକୁର ମୁଣ୍ଡର ରଜାମୁଣ୍ଡର ମୁକୁଟ ବୋଲ ଯୋଉ ଗଜ ଆମେ ଗଢ଼ି ଦଉଛୁ, ତୁ ଦେଖୁଚପା ଆମକୁ କହୁନୁ ଶ୍ରେଷ୍ଠ ? ବଢ଼େଇ କହିଲା, ଆମେ ଇନ୍ଦ୍ର ହାତରେ ପୂଜାପାଉ । ଅମେ ବଡ଼ । ସୁନାରି କହିଲା, ଇନ୍ଦ୍ର ମୁଣ୍ଡରେ ମୁକୁଟ ଆମେ ଗଢ଼ୁ, ଆମେ ବଡ଼ । ଏମିତି ତିନିହେଁ ତର୍କ କରୁ କରୁ ମରାମରି ଚଢ଼ାଚଢ଼ି ହେଲେ ।

ଏଇବେଳେ ସେଇବାଟେ ଜଣେ ବୁଢା ବ୍ରାହ୍ମଣ ଆସୁଥିଲେ । ଏମାନଙ୍କୁ ଗଡ଼ାଗଡ଼ି ହେଉଥିବାର ଦେଖି କହିଲେ, ଆରେ ଭେଣ୍ଡିଆ ଝିଅଏ ! ତମେ ହନନ୍ତି ଏମିତି ମରାମରି ଧରାଧରି କାହିଁକି ହଉଚରେ । ସେଇଠୁ ସେ ଦୁ'ଜଣ ଆସି କହିଲେ, ଗୋସେଇଁ ! ମୁଁ ବଢ଼େଇ, ସିଏ ସୁନାରି । ଆମ ଦିହିଙ୍କ ଭିତରେ କିଏ ବଡ଼ ହେବ- ଦେବଟି ? ବୁଢ଼ା ଦେଖିଲା ସର୍ବନାଶ କଥା । କେହି କାହାର ଜାତିଆଣ କଥା କୁହେ ? ମୁଁ ଯଦି ବଢ଼େଇକି ବଡ଼ କହିବି, ସୁନାରି ମୋ ଗଣ୍ଡି ଚାପି ମାରିବ । ଏଥିରେ ପଶିବା ଉଚିତ ନୁହେଁ । ଏହା ଭାବି କହିଲେ, ଦେଖିବାକୁ ତମେ ଦିହେଁ ଆମର ଯଜମାନ । କିଏ ବଡ଼ କିଏ ଶ୍ରେଷ୍ଠ କହିବି କେମିତି ? ଆମ ଦୃଷ୍ଟିରେ ଦିହେଁ ସମାନ । ତମେ ଯୁବରାଜ ମଳୟ୍ବସନ୍ତ ପାଖକୁ ଯାଅ, ସେଇ କିଏ ବଡ଼ କିଏ ସାନ ବିଚାର କରିଦେବେ । ଏକଥା ଶୁଣି ଏ ଦିହେଁ ରଜା ଦ୍ୱାରକୁ ଯାଇ ଜାଣିଲେ ଯେ ଆସନ୍ତା ମାଘ ସପ୍ତମୀ ଦିନ ମଳୟ୍ବସନ୍ତଙ୍କ ବିଚାର କଚେରୀ ବସିବ । ସେଇଦିନ ଯେ ଯାହାର ଯୋଉ ଅଛୁଡ଼ା ମାମଲା ଅଛି, ଯୁବରାଜ ବିଚାର କରିଦେବେ ।

ସେଇଠୁ ସେମାନେ ଦେଖିଲେ, ସେ ତଥି ଅନ୍ତର ଏକ ମାସ ଅଛୁ । ତେଣୁ ଯୁବରାଜଙ୍କୁ ଭେଟି ଦେବାକୁ ବର୍ନ୍ଦେ ଯୋଡ଼ିଏ ଜନଷ ତିଆରି କରିବାକୁ ଲଗିଲେ । ସୁନାରି ଗୋଟିଏ ରୁପାର ଅସ୍ଥାନ ତିଆରି କରି ସେଥିରେ ସୁନାର ଗଛଟିଏ ଗଢ଼ି ଥୋଇଲ । ସୁନା ଗଛରେ ମାରିବାର ପତ୍ର, ସେଥିରେ ପ୍ରବାଳର ଫୁଲ ଓ ମୋତିର ଫଳ ଓହଳେଇ ଦେଲ । ପୁଣି ଗୋଟିଏ ଅଷ୍ଟରତ୍ନର ମୟୂର ସେ ଫଳକୁ ଖାଉଚ ଗଢ଼ି ତିଆରି କଲ ।

ତେଣେ ବଢ଼େଇ ଯାଇ ଭଲ ବାସ ଲମ୍ବ କାଠରୁ ଗୋଟିଏ କାଠଘୋଡ଼ା ତିଆରି କରି ତା ପେଟ ଭିତରେ କ'ଣ ଗୋଟିଏ ଯନ୍ତ୍ର ଥୋଇଲ ସେଇ ଏକା ତାହା ଜାଣେ । ତା'ପରେ ଘୋଡ଼ାଟିକୁ ନାନା ରଙ୍ଗଦେଇ ଚିତ୍ର ବଚିତ୍ର କଲ । ଘୋଡ଼ା ଦେହରେ ପକ୍ଷୀଙ୍କ ପର ଯୋଡ଼ିଏ ଡେଣା ତିଆରି କରି ଖଞ୍ଜି ଦେଲ । ମଲୟୁଦ୍ଧସଭାର ବର୍ଷର ଜନେଷ ଦିନ ସକାଳେ ସେ ଗୋଟିକୁ ନେଇ ସେଠାରେ ପହଞ୍ଚିଲ । ତେଣେ ବଣିଆ ମୟୂରବସା ସୁନ୍ଦର ଆସ୍ଥାନଟିକୁ ନେଇ ସେମିତି ପହଞ୍ଚିଥାଏ ।

ଠିକ୍ ବେଳ ହେବାରୁ ଯୁବରାଜ ଆସି କଚେରୀରେ ପହଞ୍ଚିଲେ । ତହୁଁ ଏ ଦୁଇଜଣ ଯାଇ ପ୍ରଣାମ କରି କହିଲେ, ହେ ଯୁବରାଜ ! ମୁଁ ବଢ଼େଇ ଇଏ ବଣିଆ । ଆମେ ଦି'ଜଣ ଆମ କାମଟିମାନ ଆଣି ଭେଟି ଦେଉଚୁ । ଯା ଭିତରେ କଏ ବଡ଼ କଏ ସାନ ଏ ନ୍ୟାୟ ଆମର କରି ଦିଅନ୍ତୁ । ଏକଥା ଶୁଣି ଯୁବରାଜ ଆଗେ ଦିହିଁଙ୍କ ହାତ କାର୍ଯ୍ୟକୁ ଚାହିଁ ଦେଖିଲେ । ରଜାଘରେ ବା କୋଉ ସୁନାରୁପା ମୋତି ମାଣିକର ଅଭାବ ଅଛି ଯେ ବଣିଆର ବହୁମୂଲ୍ୟ ମୟୂରାସନକୁ ସେ ଚାହିଁବ ? ଏବେ ରାଜପୁତ୍ର, ଦୁଇରେ ସୁନ୍ଦର କାଠ ଘୋଡ଼ାଟିକୁ ଦେଖି ଚଟ୍‌କରି ଯାଇ ସେ ଘୋଡ଼ା ଉପରେ ବସି ଯେମିତି ବାଗ ଡୋରଟାକୁ ଧରି ଟାଣିଚ, ଘୋଡ଼ା ଧୁଁ ଧୁଁ ଶବ୍ଦ କରି ଆକାଶ ମାର୍ଗକୁ ଉଡ଼ିଗଲ । ସମସ୍ତେ ଚାହିଁଚନ୍ତି । ରାଜପୁତ୍ରକୁ

ନେଇ ମେଘ ମଣ୍ଡଳରେ ଲୁଚି ଯାଆନ୍ତେ ସେ ଲଜ୍ଜିଗଲା ଆଉ ତା'ର ପତ୍ତା ମିଳିଲା ନାହିଁ । ଏହା ଦେଖି ମନ୍ମଥଦେବଙ୍କ ରାଜା ସୁନାର ବାନ୍ଧିରେ ବ'କଣଙ୍କୁ ନେଇ ହାତରେ ଧରାଇ କହିଲେ, ମୋ ମୃତ୍ୟୁ ହୋଇଯିବା ଯାଏ ଏଇଠି ଥାଅ ମାତର ତାଙ୍କ ଗୋଡ଼ରେ ଲୁହା ଶିକୁଳି ପିନ୍ଧାଇ ଦେଲା ।

ଛତଣେ ଘୋଡ଼ାରେ ଚଢ଼ି ମଳୟ୍ବସନ୍ତ ଯେ କୁଆଡ଼ୁ କୁଆଡ଼େ ଯାଉଛି ଠିକଣା ନାହିଁ । ବନ ଧନ ବନ ବୃକ୍ଷ ଅଣ୍ଟା ଅଟିଆ ଘୋଡ଼ାରେ ଉଡ଼ି ଉଡ଼ି ଘାତଗୋଡ଼ ଧୂମେଇ ପଡ଼ିବାରୁ ସେ ବାଗ ଡୋରିଟାକୁ ବାଁ ହାତରୁ ନେଇ ଡାହାଣ ହାତରେ ଧରିଲେ । ଡାହାଣ ହାତରେ ଧରିବାରୁ ବାଁ କଡ଼ରେ ବେଶି ଚାପ ପଡ଼ିଲେ । ତହୁଁ ସେ ଘୋଡ଼ା ଆଉ ଲମ୍ଫ ନ ଦେଇ ଧୀରେ ଧୀରେ ଚାଲିବାକୁ ଲାଗିଲା । ଘୋଡ଼ା ଜଳକୁ ଖସିବାରୁ ମଳୟ୍ବସନ୍ତ ଘୋଡ଼ା ଚଳାଇବାର ଫାଇଦା ପାଇଗଲା । ଏହାପରେ ଆକାଶରୁ ଖସି ଆସି ସେ ଭଦ୍ରାଶ୍ବ ରାଜା ଦେଶର ଗୋଟିଏ ବଗିଚାରେ ଓହ୍ଲାଇ ଦେଲେ —

"ନାନା ଚନ୍ଦ୍ରଲତା ବେଷ୍ଟ ଚତୁଷ୍କୋଣ ଦଶଇ ରୁଚିର ତର
ଆକର୍ଷି ରଖିଛି ଚରାଚ ପାଦଚାରୀ ନିକଟରେ ସରୋବର ।
କୋକ ତାଳା ପତ୍ର ତା ଜଳ ନିର୍ମଳ ସେ ଜଳେ ଖେଳେ ସାରସୀ
ହରଷ ମରାଳ ଖେଳଇ ଲହରୀ ଲୁଚେ ସେ ଧୀରେ ସରସୀ ।
ଚାରେ କନକର ମଣ୍ଡପ ଦୁଇଟି ମାରବଲ ଶିଳାରେ ଗଢ଼ା
ମାଣିକ ମୋତିର ଝାଲର ଦୋହଲେ କୁସୁମ ସୁବାସେ ଭରା ।
ଫୁଲ ଫଳ ଘରେ ତାନ ଲଗାନ୍ତି ଧୀରେ ବହେ ଗନ୍ଧବହ
କର୍ପୂର ପବନରେ ଶେଯ ସଜା ଏକ ବାସ ବାସେ ମହମହ ।
କ୍ଷୀର ଫେନ ପରି ଅମଳାନ ଦେଶ ସେ ମଳୟ୍ ଆଚ ଛୁଟା
ମଣ୍ଡପ ଛତରେ ଲେଖା ହୋଇଅଛି କାରୁ କାମେକୁ ତୁଛତା ।

ଗଜଦନ୍ତ ଖଟ ହଂସତୂଳି ଶେଯରେ ପଡ଼ିଅଛି ଫୁଲ ଚୋଡ଼ା
ସେ ଶେଯକୁ ଦେଖି ମଳୟବସନ୍ତ ରୁହାଇଲା ପାଖେ ଘୋଡ଼ା ।
ସରସୀରେ ପାଦ ଧୋଇ ଯୁବରାଜ ମଣ୍ଡପେ ଉଠିଲା ଯାଇ
ଦେଖିଲା ପାୟସ ଆଦି ଖାଦ୍ୟ ଅଛି ମନ ସୁଖେ ଦେଲା ଖାଇ ।
ସୁପାତି ଶେଯରେ ଡଳାଇଲା ଦେହ ଭ୍ରମଣ ବିକାଶ ତନୁ
ଅଳ୍ପମତେ ନିଦ ନିମିଷେ ପାଇଲା ଆଣକତ ହେଲା ମନୁ ।
ସେହି ଉପବନ ରାଜ ଦୁଲଣାର ନିଶେଳା ବିଳାସ ପାଇଁ
ଅଜଣା ଭିତ୍ତିରେ ପୁରୁଷ ଜନର ଗତି କେବେ ପଡେ ନାହିଁ ।
ରାଜକେମା ଦାମ ମୋହମା ମତିଁର ବସୁର୍ମୀ ସୁବର୍ଣ୍ଣ ସାର
ରୂପ ଲାବଣ୍ୟରେ ଅପସରା ସରି ନୋହିବେ କଦାପି ତାର ।
ଅଜଣା ଗହଣେ ସେ ଆସି ସେ ସ୍ଥାନେ ଦେଖିଲା ତାର ଶେଯରେ
ଅପରୂପ ଏକ ସୁଠାମ ଯୁବକ ଶୋଇ ରହିଛି ନିଦରେ ।
ମାର କୁମାରକୁ ମାନୁଛି ତା ରୂପ ଲଜ୍ଜିତ ସୁଷମ ଶର
ଦେଖିଲାକ୍ଷଣି ସେ ସୁଲକ୍ଷଣୀ ବାଳା ମିଳିଲା ତା ପାଛୁଣର ।
ଧୀରେ ମୂଲେ ମନ ଅନୁମାନ ତାର ତାକୁ ଠେଲିଦେଲା ବାଳା
ଭାବିଲା ବିଧାତା ଯୁଟାଇଲା ବଳେ ଯାରୁ ଗଳେ ଦେବି ମାଳା ।
ଅଜଣାତ କୁଳ ହେଲେ ମୁଁ ଆକୁଳ ହେଲି ହେବ ଅକୂଳରେ
ଏହା ବାଦୁ ହେଲା ସାହାଯ୍ୟ ଲାଗିବ ଜାମ ଜଳଧି କୂଳରେ ।"

ରାଜକନ୍ୟା ଏହିପରି ମନରେ ଭାବି ବାହାରେ ସାର ଦେଖେଇ ସଖୀଙ୍କି କହିଲା, ଆଲୋ ଦେଖୁଛ ? କିଏ ଗୋଟାଏ କୁଳମୂଳ ଅଜଣା ଯୁବକ ମୋ ଅନ୍ତଃପୁର ଉପବନରେ ପଶି ଆସି ମୋ ପଲଙ୍କରେ ଶୋଇଅଛି । ଆଜ ଯାକୁ ଧରିନେଇ ଯିବ । ବାପାଙ୍କୁ କହି ଯାର ମୁଣ୍ଡ କଟେଇ ଦେବି । ଏମିତି କଥା ହେବାର ଶୁଣି ମଳୟବସନ୍ତର ନିଦ ଭାଙ୍ଗିଗଲା । ସେ ଉଠି କହିଲା, ମୋତେ ଦଣ୍ଡ ଦେବ କାହିଁକି ? ମୁଁ ଅକୁଳୀନ ନୁହେଁ, ଜଣେ ରାଜପୁତ୍ର । ଆକାଶରେ ଗଲାବେଳେ

ଏ ପୋଖରୀ ପାଣି ଦେଖି ଲୋଭ ହେବାରୁ ଓହ୍ଲାଇ ଗାଧୋଇଲେ । ଖାଦ୍ୟ ଥିଲା ଖାଇଲେ । ଝରକା ପଡ଼ିଥିଲା ଶୋଇଲେ । କେଉଁଣ ଅପମାନିତ କଲେ ନାହିଁ ? ଏଇଥିପାଇଁ ସବୁ ଶୁଣୁନ ମୁଁ ମୋ ବାଟରେ ଚାଲିଯାଉଛି । ଏତା କହି ସେ କାଠ ଘୋଡ଼ାରେ ଚଢ଼ିବାରୁ ଘୋଡ଼ାଟା ଶୂନ୍ୟମାର୍ଗରେ ଉଡ଼ିଗଲା ।

ମନ୍ତ୍ରୀପୁଅଙ୍କ ଉଡ଼ିଯିବାରୁ ମୋହିନୀ ଭାବିଲା, ତା ହୃଦୟରୁ ପ୍ରାଣପକ୍ଷୀ ଯେମିତି ଉଡ଼ି ଯାଉଛି । ସେ ଉପରେ କାହାକୁ କିଛି ନ କହିଲେ ବି ମନେ ମନେ ଭାବି ହୋଇ ଅଧା ଶରୀର ହେଲାଣି । ଆହା କି କୁକର୍ମ କଲି । 'ଆଚମ୍ବିତ ମାଣିକ ଫିଙ୍ଗିଦେଲି ପାଣିକି' ଏମିତି ଭାବି ଶରୀର କ୍ଷୀଣ କରି ଦେଇଛି ସେଇ ଦିନ ଠୁଁ । ଅଜଣା ପୁରୁଷ ମାଣିକ ପାଇବ ସେଇଥିପାଇଁ ହର ଗଉରୀ ପୂଜା କରୁଥାଏ । ସବାରେ ଶିବାଳୟକୁ ଯାଇ ଧାରଣା ଦେଉ, ସଞ୍ଜକୁ ଲେଉଟେ । ଆଉ ବାଗିଚା ମଣ୍ଡପକୁ ଯିବାକୁ ମନ ନାହିଁ । ବଜା ମାଳଗି ଯୋଳ ମାଲୁଣିଟିଏ ଠିକ୍ କରି ଦେଇଥାନ୍ତି । ସେ ଘେର ଭିତରୁ ଆସି ସେଇ ବଗିଚାରୁ ଫୁଲ ତୋଳି ଦିଏ, ତାକୁଇ ନେଇ ମୋହିନୀ ଶିବ ମନ୍ଦିରକୁ ଯାଏ । ତପସ୍ୱିନୀ ପରି ବେଶ ଧରି ତପସ୍ୟା କରି ରହେ ।

ଏଣେ ମନ୍ତ୍ରୀପୁଅମାନେ ସେଠାରୁ ଉଡ଼ି ଆସିଲେ ସିନା, ହେଲେ ତା ମନପଟରେ ମୋହିନୀର ରୂପ ଛବି ଗଢ଼ିହୋଇ ରହିଲା ମୋହିନୀ ଆଖି ଲୁଷିଯାଏ ତା ମନ ସନ୍ଧରେ ।

ଅନେକ ସ୍ତ୍ରୀ ଭଲ ପାଇବା ପୁରୁଷ ସଙ୍ଗରେ କଳି କରନ୍ତି । ମୋହିନୀ ସରାଗଥା କହିଲେ ବି ସେ'ଟା ହୋଇଛି ପୂର୍ବରାଗ । ଶାସ୍ତ୍ର କହୁଛି—

"ସ୍ତ୍ରିୟଃଚେନ ସ୍ୱଦେନ ଚ କନ୍ଦର୍ପାଗ୍ନିଭୂଷ୍ଟ ।
ଦଗ୍ଧ ନୈରଣ୍ୟଂ କଟାକ୍ଷବା ଝଣେ ।

ବସ୍ତ୍ରୈର୍ଭୂଷଣୈର୍ବ୍ୟା ବାକଚେଷ୍ଟନ ଲୀଳୟା,
ସମସ୍ତଭୋଗୈର୍ବୈଃ ଖଳୁ ବନ୍ଧନଂ ସ୍ତ୍ରିୟଃ ।”

ନାରୀମାନେ ମନ୍ଦହାସ, ନୟନଭଙ୍ଗ, ସ୍ନେହ, ମଧୁର କଥା, ଅଧରସୁଧାଣୀ, ଅଙ୍ଗବିଳାସ, ଈର୍ଷା କଳହ ଇତ୍ୟାଦି କରି ପୁରୁଷକୁ ବଶ କରନ୍ତି । ସେଥିପାଇଁ ମଳୟପବନ କୋଉଠି ଅସ୍ଥିର ରହୁ ନାହିଁ । ସବୁବେଳେ ମୋହିନୀର ଚିନ୍ତା । କେତେଥର ଭାବନାରେ ମୋହିନୀକୁ ଦେଖିଲଣି, ସେ'ଠି ମଣ୍ଡପରେ ଫୁଲ ଶଯ୍ୟା ପାଇଁ କି ମୋହିନୀର ଛାୟା ବି ପଡ଼ୁ ନାହିଁ । ତେଣୁ ମନ ଖରାପ କରି ବନପଥ ବାଟ ଧରି ବାହାରୁଛି । ଏମିତି କରି ବୁଲି ବୁଲି ଧନେ ପୋଖରୀ ପାଖରେ କାଠ ଘୋଡ଼ାକୁ ଓହ୍ଲାଇ ମନ ଦୁଃଖରେ ମଳୟପବନ ଗାଉଛି—

‘କାଠ ଘୋଡ଼ା ପାଣି ପିଏରେ ପାଣି ପି
ରଜାଘର ପୋଖରୀ ପାଣି ପିରେ ପାଣି ପି ।’
ଯାହାଲାଗି ଜଡ଼ ବୁଲି ଜେଣା ଧାଉ ଅଳଣ
ତାକୁ ଦେଖି ନାହିଁ ଆଜ ଗଲା କେତେ ଦିବସ
ପାରୁ ଯଦି ମନଛୋଡ଼ ଦେଇ ତାକୁ ପାଣି ପି'ରେ ପାଣି ପି ।
ସୁନାଗୋରୀ ରୂପ ଧରି ଯାଇଛି ଏ ମନକୁ
ତା'ଲାଗି ହେବି ଯୋଗୀ ତେଜି ରାଜ୍ୟ ଧନକୁ ।
କାହିଁଗଲା ଅଭାଗ୍ୟ ସେ ତାକୁ ଧରିଆଣି ପି'ରେ ॥

ଏମିତି ଗୀତ ଗାଇ ପାଗଳ ପରି ବୁଲୁଛି । ଏଇବେଳେ ମାଳତୀନାମା ମାଲୁଣୀ ସେଇ ବାଟରେ ଫୁଲ ତୋଳିବାକୁ ଆସି ଗୀତଟି ଶୁଣିପାରିଲା ସେଇଠି । ସେ ଚାହିଁକା ହୋଇ ଭାବିଲା, ରଜା ବଗିଚାରେ ପଶି କିଏ ଏଠି ଏ ପାଗଳ ଗୀତ ବୋଲୁଛି ଦେଖେ । ଏହା ଭାବି ଗଲାବେଳକୁ ମଳୟପବନ ଛିଡ଼ା ହୋଇ ଗାଉଛି । ତାର ରୂପ ଠାଣି ଦେଖି ମାଲୁଣୀ ତରଳି ଗଲା । ସେ ପାଖକୁ ଯାଇ ପଚାରିଲା ବାପା ! ତୁ କାହା ପୁଅରେ ! ଆରେ ଏମିତି ଗର୍ଭସ୍ଥ

ସହରରେ ରଜାଘର ଆଗରେ ବଗିଚାରେ ପଶି ତୁ କ'ଣ କରୁଚୁ ? ମଳୟବସନ୍ତ କହିଲା, ମୁଁ ବୁଲୁ ବୁଲୁ ବାଟବଣା ହୋଇ ଏଠି ହେଲିଣି । ବିଦେଶୀ ଲୋକ । କୁଆଡ଼େ ଯାଇ କେଉଁଠି ରହିବ ସ୍ଥିର ପାରୁନ ।

ମାତଙ୍ଗୀ ମାଲୁଣୀ ଦେଖିଲା, ଏଡ଼େ ସୁନ୍ଦର ଟୋକାଟାଏ ତା ପାଖରେ ରହେ ଦେଖି ଦେଖି ତୃପ୍ତି ହବଚ ! ସେଥିପାଇଁ କହିଲା, ମୋ'ର ତ କିଏ ନାହିଁ ଘର ପଡ଼ିଚ ସେଇଠି ରହିବୁ ଚାଲ । ସେଇଠୁ ମଳୟବସନ୍ତ ଆସି ମାଲୁଣୀ ଦୁଆରେ ରହିଲା । ଚଉଠି ଆରଦିନ ମାଲୁଣି ଫୁଲମାନ ଗୁନ୍ଥିଲା ବେଳେ ମଳୟ କହିଲା, ତୁଚ ନିତି ପ୍ରତି ଗୁନ୍ଥି ଦେଉଛୁ । ମୁଁ ଆଜ ଗୋଟିଏ ଫୁଲ ଝରା ଗୁନ୍ଥି ଦଉଚ ନେଇଯା ଦେଖି, ଜେମା ପସନ୍ଦ କରୁଚ କି ନାହିଁ ? ଏହା କହି ସେ ଗୋଟିଏ ଫୁଲମାଳ ଗୁନ୍ଥି ସେହି ଫୁଲ ପାଖୁଡ଼ାରେ ଲେଖିଦେଲା ସେଦିନ ମଣ୍ଡପରେ ତୁମକୁ ଦେଖି ମୁଁ ମୋହିତ ହୋଇଥିଲି, ହେଲେ ତୁମେ ଯେଉଁ ନିଷ୍ଠୁର କଥା କହିଲ ସେଥିରେ କୌଣସି ରାଜପୁତ୍ର ରହିପାରେ ନା । ଜେମାମଣି ! ତୁମକୁ ଦେଖି ଭାବିଥିଲି ଜୀବନ ସର୍ଜିମା କରିବ ବୋଲି, କିନ୍ତୁ ତୁମର—

'ଇନ୍ଦ୍ରା ବରଣେ ନୟନଂ ମୁଖ ମମ୍ବୁଜେନ
କୁନ୍ଦେନ ଦନ୍ତ ମଧୁରଂ ନବପଲ୍ଲବେନ ।
ଅଙ୍ଗାନ ଚମ୍ପକ ଦଳୈଃ ସ୍ୱବଧାୟ ବେଧାଃ
କାନ୍ତେ ! କଥଂ ଘଟିତବାନୁ ପଳେନ ଚେତଃ' ।

ଆଖି ଦୁଇଟି ନୀଳ କଇଁରେ, ମୁହଁଟି ପଦ୍ମରେ, ଦନ୍ତ କୁନ୍ଦ ଧଳା କଇଁରେ, ଅଧରକୁ ନବପଲ୍ଲବରେ, ଦେହକାନ୍ତିକୁ ଚମ୍ପାଫୁଲ ଦଳରେ ସମତା ରଖି ବିଧାତା ତିଆରି କରି ହୃଦୟକୁ କପରି ଯେ ପଥର କରିଦେଲା ସେଇକଥା ଭାବୁଛୁ । ଏତିକ ଲେଖି ମାଲୁଣୀକୁ ଦେଇଥାରୁ ସେ ନେଇ ମୋହିନୀଙ୍କ ସେ ଫୁଲ ଝରାଟି ଦେଲା ।

ମୋହିନୀ ଦୃଆ ରକମର ଫୁଲ ଝରା ଦେଖି ଖୁସି ହୋଇ ଦେଖିଲା ଦେଳକୁ ଉପରେ ଶ୍ଲୋକଟି ଲେଖା ହୋଇଛୁ । ମାଲୁଣି ତ ପଢ଼ି ଜାଣେନା । ତେଣୁ ମୋହିନୀ ବ'ଥରେ ପଢ଼ି କହିଲା ଆଲୋ ମାଉଜି ଏ ଫୁଲ ଝରଟି ଆଜ କଏ ଗୁନ୍ଥିଛି କହିଲୁ ? ମାଲୁଣୀ ଅ ପ୍ରାକାବା ହୋଇ କହିଲା, ମୋ ଝିଅଟା ଗୁନ୍ଥିଦେଇଛ । ଖରପ ହେଲା ନା ଧଣ ମା । ମୋହିନୀ କହିଲା ନାହିଁ ଧଲ ହୋଇଛ । ତୁ ଏ ଶାଢ଼ୀ ଖଣ୍ଡକ ନେଇଯା ତାକୁ ଦେଇ କହିବୁ, ମୁଁ ପୁରସ୍କାର ଦେଉଛ । ଏହା କହି ସେ ଘରକୁ ଯାଇ ଶାଢ଼ୀ ଖଣ୍ଡକରେ ଲେଖିଲା –ତୁମକୁ ମୁଁ ନିଶ୍ଚୁଉ କଥା କହି ଛଡ଼ ଦେଇ ହରଉମାଙ୍କ ପୂଜନ୍ତି ତୁମକୁ ପାଇବା ପାଇଁ । ତାଙ୍କ ଦୟାରୁ ଥିଲ ଯେଉଁ ଘୋଡ଼ାରେ ଚଢ଼ି ଯାଇଥିଲ ସେହି ଘୋଡ଼ାରେ ଆସି ଆଜ ରାତିରେ ସେଇ ମଣ୍ଡପରେ ପହଞ୍ଚିବ । ମୁଁ ସେଇଠି ବରଣମାଳା ଦେଇ ତତରେ ବାନ୍ଧିନେବ ।

ମାଉଜିଙ୍ଗ ସେ ଶାଢ଼ୀଖଣ୍ଡକ ଆଣି ମଳୟକ ହାତବ, ବ ବୁଢେ ! ନେମା ତୋ ଫୁଲଝର ଦେଖି ଏଇଟି ଦେଇଛି ନେ । ଆଉ ତୁ ଯେମିତ ଅଡ଼ୁଆରେ ମୋତେ ପକାଇଥିଲୁ, ଝିଅଟା ଗୁନ୍ଥିଛି କହି ଜାଆଲ ଜଣ ଥଇଲ ସିନା । ମଳୟବସନ୍ତ ଶାଢ଼ୀଟାକୁ ଦେଖି ଖୁସି ପଢ଼ି କହିଲ, ଏଟାକୁ କାଚ ଧୋଇ ତୁ ପିନ୍ଧବୁ ନେ ମାଉସୀ । ବୁଢ଼ୀ ଶାଢ଼ୀ ନେଇଗଲ ।

ଅଧିକ ରାତ ହେବାରୁ ମାଲୁଣୀ ଶୋଇ ପଡ଼ିଲ । ମଳୟବସନ୍ତ କାଠ ଘୋଡ଼ାରେ ଚଢ଼ି ଯାଇ ହର ଭଗବନ ମଣ୍ଡପ ପାଖରେ ଓହ୍ଲାଇଲାବେଳକୁ ମୋହିନୀ ଅଙ୍କାଳେକା ବେଶରେ ଜହ୍ନାଲୋକାର ଚିହ୍ନ ଫୁଲମାଳ ଧରି ଛିଡ଼ାହୋଇଛି । ମଳୟ ଘୋଡ଼ାରୁ ଓହ୍ଲାଇବାରୁ ସେ ତା ଗଳାରେ ମାଳାଟି ଲମ୍ବାଇ ଦେଇ ମୁହଁପୋତି ରହିଲା । ମଳୟ ତାର ଲାଜର ମୁହଁଟିକୁ ଉଠାଇ କହିଲା ପ୍ରିୟତମେ ମୋତେ

ଭୁଲି ନ ଥିଲ ? ଏମିତି କୁହାକୁହି ହୋଇ ଦିହେଁ ଶେଯ ଉପରକୁ ଗଲେ । ଏମିତି କରି ପ୍ରତିଦିନ ଦିହେଁ ସେହି ମଣ୍ଡପକୁ ଆସି ମିଳନ ମାଧୁରୀ କରୁ କରୁ ନଅମାସ ଗଲା । ମୋହିନୀର ସାଙ୍ଗ ଦାସୀ ବି ଏ କଥା ଜାଣନ୍ତି ନାହିଁ । ହେଲେ ଚୋରଘର କି ସବୁଦିନ ଅନ୍ଧାରରେ ଥିବ ? ଦିନେ ଆଲୁଅ ହୁଏ । ସେମିତି ଜେମାର ପୁରୁଷ ସଙ୍ଗର ଚିହ୍ନ ଓ ଗର୍ଭ ଲକ୍ଷଣ ଜଣାପିବାରୁ ଦାସୀମାନେ ରାଣୀଙ୍କି ଜଣାଇଲେ । ରାଣୀ ଆସି ମୋହିନୀର ଦେହ ଦେଖି ଗର୍ଭ ଲକ୍ଷଣର ପ୍ରମାଣ ପାଇ ରାଜାଙ୍କୁ କହିଲେ, ମୁଁ ଯେତେ କହିଲି ଶୁଣିଲ ନାହିଁ । ଝିଅ ଜନ୍ମିଲେ ଅଣ୍ଡୁଆ, ଝିଅ ବଢ଼ିଲେ କଣ୍ଡୁଆ । ଏବେ ଦେଖ ଯାଇ ମୋହିନୀ କୋଉଠି କାହା ସଙ୍ଗରେ ଚୋରା ପୀରତି କରି କଳଙ୍କ ଲଗେଇଲାଣି । ଲୁଚିଲା ଘା ଦାଗ ଛୋଟୁକେ ଯିବନାହିଁ । ଯଥୋଚିତ କାର୍ଯ୍ୟ କର ।

ରାଜା ସବୁ ଶୁଣି ମନ୍ତ୍ରୀଙ୍କୁ ଡାକି ଗୁପତ କରି କହିଲେ, ଦେଖ ମନ୍ତ୍ରୀ ! ଆମ ଉଆସରେ ଶତ ପ୍ରହରୀ ଥାଉ ଥାଉ କେଉଁ ପାପିଷ୍ଠ କେମିତି ଆସି ମୋହିନୀ ସଙ୍ଗରେ ପୀରତି କରୁଛି । ତୁମେ ଏ କଥା ତୁରନ୍ତ ନକରି ପନ୍ଦରଦିନ ଭିତରେ ସେ ଲମ୍ପଟକୁ ଧରେଇ ଦିଅ । ନ ହେଲେ ଆଗ ତମକୁ ମାରି ପଛେ ତା କଥା ବିଚାର କରିବି । ମନ୍ତ୍ରୀ ଦେଖିଲେ ସର୍ବନାଶ ?

ରଜା, ବଜର ଝିଅର ବର ।
ଏ ତିନକୁ ନାହିଁ ଉତ୍ତର ॥

ସେଇଠୁ ମନ୍ତ୍ରୀ ଆସି ଅନେକ ଚେଷ୍ଟା କରିଚି, ଚୋରର ପଥ ପାଇଲା ନାହିଁ । ନିରାଶ ହୋଇ ଆସି ଘରେ ମୁହଁମାଡ଼ି ଶୋଇ ପଡ଼ିଲା । ମନ୍ତ୍ରୀର ଗୋଟିଏ ଚତୁରୀ ଝିଅ ଅଛି । ସେ ମାରଣ ତାରଣ ବଶୀକରଣ ବିଦ୍ୟା ଜାଣେ । ସେ ଯାଇ ବାପାକୁ ଡାକିବାରୁ ମନ୍ତ୍ରୀ କହିଲେ, ଘୋର ସଙ୍କଟରେ ପଡ଼ିଛି କାଳିକା ମରିବି । ଆଜ ଆଜୁ

ଗଣ୍ଡାଏ ଖାଇ କି ଲଭ ମା ! ଏତା ଶୁଣି ମନ୍ତ୍ରୀ ଝିଅ ପଚାରିଲା, କ'ଣ ହୋଇଛି ବାବୁ ! ମନ୍ତ୍ରୀ ସବୁକଥା ତା ଆଗରେ କହିବାରୁ ଝିଅ କହିଲା, ହଉ ତୁମେ ଆଜ ଖାଇବ ଚାଲ ମୁଁ ଚୋର ଧରିବାର ବାଟ କହିଦେଉଛି । ଏଇଟା ଏମିତି କୋଉ ଗୁଆର କଥା ଯେ ତୋ ହେବ ନାହିଁ ?

ଝିଅ କଥାରେ ମନ୍ତ୍ରୀ ଉଠି ଖାଇବାରୁ ଝିଅ କହିଲା, କାଲି ଖଣ୍ଡେ ପର୍ଦ୍ଦିଆ ସୁନାକୁ ଶିଳରେ ଘଷି ଗୁଣ୍ଡ କରିଦେବ । ପୁଣି କଂସାଏ ଚନ୍ଦନ ଘୋରି ସେଥିରେ ଏ ଚୂନା ସୁନାକୁ ଗୋଳେଇ ରାଜକନ୍ୟାର ଶୋଇବା ଘରକୁ ପଠେଇ ଦେବ । ତହିଁ ଆରଦିନ ରାଜ୍ୟ ଯାକର ପ୍ରତି ନଦୀ, ପୋଖରୀ ଘାଟରେ ପହରୀ ରଖିବ । ଯୋଉ ଲୋକ ଦେହ ବାସୁଥିବ ଓ ସୁନେଲି ରଙ୍ଗିଆ ହୋଇ ଜକ ଜକ କରୁଥିବ ଦେଖିଲେ ତାକୁ ଧରି ଆଣିବେ ।

ଏଭଳି ବୁଦ୍ଧି ଦେବାର ଶୁଣି ମନ୍ତ୍ରୀ ଝିଅକୁ ଧନ୍ୟ ଧନ୍ୟ କହି ସେହି ପ୍ରକାର ସୁନା ଓ ଚନ୍ଦନ ଘଷା ମିଶେଇ ମୋହିନୀ ପୁରକୁ ପଠେଇ ଦେଲେ । ରାତିରେ ମଳୟବସନ୍ତ ଆସିବାରୁ ମୋହିନୀ ତା ଦେହରେ ଚୂଆ ଚନ୍ଦନ ବୋଳି ଦେଇଥିଲା । ତହିଁ ଆରଦିନ ମଳୟବସନ୍ତ ଯାଇ ଗୋଟିଏ ପୋଖରୀ ଘାଟରେ ଗାଧୋଉଛି । ଏଣେ ପାଇକ ତା ଦେହର ବାସ୍ନା ପାଇ ଓ ସୁନେଲି ରଙ୍ଗ ଦେଖି ତାକୁ ବାନ୍ଧିନେଇ ମନ୍ତ୍ରୀ ପାଖରେ ଦେବାରୁ ମନ୍ତ୍ରୀ ତାକୁ ନେଇ ରାଜାଙ୍କର ଜିମା କରିଦେଲେ ।

ରାଜାଙ୍କର ମରମରେ ଘା ଲାଗି ଦେହ ଜଳୁଥି । ସେ ଏପରି ସୁନ୍ଦର ଯୁବକକୁ ଦେଖି କିଛି ନ ପଚାରି ନ ବିଚାରି ଘାତକଙ୍କୁ କହିଲେ, ଏ କପଟ ଟୋକାକୁ ନେଇ ଯାଇ ମୁଣ୍ଡ କାଟିଦିଅ । ଘାତକ ତ ଏଥିପାଇଁ ବର୍ତ୍ତିନ ପାଉଛନ୍ତି । ସେମାନେ ହୁକୁମ ପାଇ ମଳୟବସନ୍ତକୁ ବାନ୍ଧି ଶଳିଆ ପଡ଼ାକୁ ନେଇଗଲେ । ବନ୍ଧୁଘର

ଗୁମର କଥା ସହରେ ଘଟିଯାଇଥିବା ଘଟଣା । ଲୋକେ କିଛୁ ଜାଣି ନ ଥିବାରୁ ଏପରି ସୁଚତୁର ଟୋକାକୁ ଅକାରଣେ ରଜା ମୁଣ୍ଡକାଟ କରୁଛନ୍ତି ଜାଣି, ହା-ହା-କାର କଲେ ।

ଘାତକମାନେ ମୁଣ୍ଡକଟା ଡିହାକୁ ମଳୟବସନ୍ତକୁ ନେଇ ଯିବାରୁ, ସେ ଭଗବାନଙ୍କୁ ଡାକୁଥାଏ । ମରଣ ବେଳେ ହରିଙ୍କି ଡାକିଲେ ତରିଯା'ନ୍ତି ବୋଲି ବଡ଼ବଡ଼ିଆ କହିଛନ୍ତି । କୃଷ୍ଣ ମୁହଁରେ କହିଛନ୍ତି ମୁଁ ଯାହାକୁ ହୁଅଇ ସଦୟ, ଜ୍ଞାନ ତା ହୃଦରୁ ଉଦୟ । ଶୂଳଅଁାପଦାରେ ହେବାରୁ ମଳୟବସନ୍ତ ଘାତକଙ୍କୁ କହିଲା, ସ୍ୱାଇ ! ରଜା ହୁକୁମରେ ତମେତ ଏକ୍ଷଣି ମୋ ମୁଣ୍ଡ କାଟିଦେବ । ହେଲେ ମୁଁ ଗୋଟିଏ ରଜାପୁଅ । ମୋହିମା ଲୋଭରେ ବହୁତ ଧନରତ୍ନ ଘେନିଆସି ଗୋଟିଏ କାଠ ଘୋଡ଼ା ପେଟରେ ରଖି ତାକୁ ଗୋଟିଏ ଗଛ ଅଗରେ ଲୁଚ୍ଛାଇ ରଖିଛି । ସେଥିରେ ବହୁମୂଲ୍ୟ ମଣି ରତ୍ନ ରହିଛି । ମୋତେ୍ ଆଗେ ସେଇଠିକି ନେଇଚାଲ । ମୁଁ ସେଗୁଡ଼ିକୁ କାଢ଼ି ତୁମକୁ ଦେଇ ଦେବି । ମରିଗଲେ କଏ କୁଆଡ଼େ ବୋହିନେବ। ଅପେକ୍ଷା ଜୀବିତ ଅବସ୍ଥାରେ ତୁମକୁ ଦାନ କରି ଗଲେ ମୋର ବି ପୂଣ୍ୟ ହେବ, ତୁମର ଦରିଦ୍ର ଅବସ୍ଥା କଟିବ ।

ଏହା ଶୁଣି ଧନଲୋଭରେ ଘାତକମାନେ ମଳୟବସନ୍ତକୁ ନେଇ ସେଇ ଉପବନରେ ହାଜର କହିଲେ, ଆଚ୍ଛା ତୁ ଗଛକୁ ଉଠି ଘୋଡ଼ାଟାକୁ ଉତାରି ଆଣେ । ଆମେ ଗଛମୂଳେ ଜଗି ରହିବୁ । ଏହାକହି ସେମାନେ ମଳୟବସନ୍ତର ବନ୍ଧନ ଖୋଲି ଦେବାରୁ ସେ ଗଛ ଉପରକୁ ଉଠିଗଲା । ଘାତକମାନେ ମଣି ମାଣିକ୍ୟ ଲୋଭରେ ଉପରକୁ ଚାହିଁଥାନ୍ତି । ମଳୟବସନ୍ତ ଗଛ ଉପରକୁ ଯାଇ ଘୋଡ଼ା ଉପରେ ଚଢ଼ି ଚ୍ଚୁ" । ଘାତକମାନେ ତଳାରେ ଗଳାରେ କହୁଥାନ୍ତି । ମଳୟବସନ୍ତ ପଳାଇବାରୁ ଘାତକଗୁଡ଼ା ରଜା ଡରରେ ବିଷଖାଇ ମରିଗଲେ ।

ଏଣେ ମଳୟବସନ୍ତ ଘୋଡ଼ାଟିକୁ ଗୋଟିଏ ଗୁପ୍ତ ଜାଗାରେ ରଖି ମାଳ ବେଶଧରି ମାଳଙ୍ଗ ଦୁଆରେ ରହୁଥାଏ । ମୋହିନୀ ପାଖକୁ ଆଉ ଯାଏ ନାହିଁ । ଏକେ ସେ ଗର୍ଭବତୀ, ଦୁଇରେ ରାଜଭୟ । ତେଣେ ମୋହିନୀ ଯେମିତ ଜାଣିଲା, ମଳୟବସନ୍ତକୁ ଧରି ରାଜା ମୁଣ୍ଡକାଟ କରିବାକୁ ପଠାଇବାରୁ ସେ ଖସି ପଳାଇଛି, ସେଇଠୁ ସେ ଗୋଟିଏ ଘରେ କବାଟ କିଳି ପଡ଼ି ରହିଲା । ରାଣୀ ଯେତେ ଡାକିଲେ ଉଠିଲା ନାହିଁ କି ପାଣି ଟୋପାଏ ବି ପିଇଲା ନାହିଁ । ତେଣୁ ରାଣୀ ରାଜାଙ୍କୁ ଜଣାଇବାରୁ ରାଜା ଆସି ଡାକିଲେ ମୋହିନୀ ଘରେ ଥାଇ କହିଲା, ମୁଁ ପାଞ୍ଚବର୍ଷ ହେଲା ଯୁବତୀ ହୋଇ ଘରେ ରହିଲି । ମୋତେ ବାହାଘର ନାଁ ଧରିଲ ନାହିଁ । ତେଣୁ ମୁଁ ଭାଗ୍ୟବଳରୁ ଖୋଜି ଲୋଡ଼ି ଗୋଟିଏ ରାଜପୁତ୍ରକୁ ଗନ୍ଧର୍ବ ବିଧିରେ ବରିଥିଲି । ତୁମେ ନବୁଝି ନଶୁଝି ତାଙ୍କୁ ନେଇ ହାଲି ଶୂଳି ଦେଉଥିଲ । ସେ ବୁଦ୍ଧି ବଳରେ ଖସି ଯାଇଛନ୍ତି । ତାଙ୍କୁ ଖୋଜି ଆଣି ମୋତେ ଦେବତ ମୁଁ ଜଳ ପାଣି ଖାଇବି । ନୋହିଲେ ଚିରସ୍ତହର ହୋଇ ରହିବା ଅପେକ୍ଷା ଏକ ଉପାସରେ ରହି ଶୁଖିଶୁଖି ମରିବି । ରାଜା ରାଣୀ ଅବାକ୍ ହୋଇ ପରେ କହିଲେ, ତୁ ଏମିତି ବେଆଇନ କାମ କଲୁ କାହିଁକି ? ଯଦି ତାକୁ ପଣ୍ଡିତରେ ବରିଥିଲୁ ଆମକୁ କାହାରି ଦ୍ୱାରା ଜଣାଇଥିଲେ ତ ଏତେ ଅଡୁଆ ହୋଇ ନ ଥାନ୍ତା । ଯା' ହଉ ଭାଗ୍ୟ ବଳରୁ ଯଦି ବଞ୍ଚି ଯାଇଛି, ତା'ହେଲେ ତାଙ୍କୁ ଖୋଜିଆଣି ତା ସଙ୍ଗରେ ତୋତେ ବାହାଘର କରେଇ ଦେବା । ସେ ପାଇଁ ନ ଖାଇ ରହିବୁ କାହିଁକି ? ଉଠିଆସି ଖିଆପିଆ କର । ସେଇଠୁ ମୋହିନୀ ଉଠି ଖିଆପିଆ କଲା ।

ଏଣେ ରାଜା ଚଉଦିଆଡ଼େ ଲୋକ ପଠେଇ ଖୋଜାଖୋଜି କରି ଶେଷରେ ମାଳଙ୍କ ମାଲୁଣୀ ଘରୁ ମଳୟବସନ୍ତକୁ ପାଇଲେ ।

ତାକୁ ନେଇ କୁଳ ଗୋଟ ବୁଝି ମୋହନା ସଙ୍ଗେ ବାହା କରେଇ ଦେଇ ବହୁ ଯାନଯୌତୁକ ଦେଲେ । ମଳୟବସନ୍ତ ଭାବିଲା, ଆଗେ ମୋହନାକୁ ନେଇ ଦେଶକୁ ଯାଇ ଖବର ଦେବ । ତାପରେ ଲୋକ ଆସି ଜନିଷପତ୍ର ନେଇଯିବେ । ଏହା ଭାବି ସେ କାଠ ଘୋଡ଼ାରେ ଚଢ଼ି ମୋହନାକୁ ସଙ୍ଗରେ ନେଇ ଦେଶକୁ ବାହାରିଲା । ଯାଉ ଯାଉ ଆଠଦିନ ଯାଇଚି ବାଟରେ ମୋହନାର ଗର୍ଭବେଦନା ଉଠିଲା । ତେଣୁ ବାଧ୍ୟହୋଇ ମଳୟବସନ୍ତ ମୋହନାକୁ ଗୋଟିଏ ଯାଗାରେ ଓହ୍ଲାଇ ଦେବାକୁ ସେଠି ମୋହନା ଶୂଳ ବେଦନାରେ ଛଟପଟ ହେଲା ।

ମଳୟ ଦେଖିଲା ନିକଟରେ ଗାଁ ଘର ନାହିଁ । ପଡ଼ିଲା ପୋଖରିକୁ ସମ୍ଭାଳିବ କିମିତି । ଏହା ଭାବି ସେ ମୋହନାକୁ କହିଲା, ଟିକିଏ କଷ୍ଟକରି ବସ । ମୁଁ ଯାଉଚି ପାଖ ଗାଁରୁ କଡ୍ରୁ ଶୁଣ୍ଠି, ପିପ୍ପଳି, ଘିଅ ଓ ଜଣେ ପୁରୁଖା ସ୍ତ୍ରୀ ଲୋକକୁ ଘେନି ଆସେ । ଏହାକହି ଗୋଟିଏ ଗଛମୂଳେ ମୋହନା ବସିଥାଏ ।

ମଳୟବସନ୍ତ ଯାଇ ସେ ଗାଁରେ ଯାହାକୁ ଦେଖିଲା ସେ ହେଉଚି ପେଶାଦାରୀ ବେଶ୍ୟାଟିଏ । ତାକୁ ଦେଖି ମଳୟ ଘିଅ ଆଦି କୋଉଠି ମିଳିବ ପଚାରିବାରୁ, ସେ ଦେଖିଲା ଯୁବକଟି ଦେଖିବାକୁ ଅତି ସୁନ୍ଦର । ପୁଣି ବିଦେଶୀକୁ ପାଖରେ ରଖିଲେ ଭଲ ହେବ ଭାବି କହିଲା, ହଉ ତମେ ଏଇଠି ବସ ମୁଁ ଯୋଗାଡ଼ କରି ଦଉଚି । ବିଦେଶିଆ ଲୋକ, କୋଉଠି ବୁଲିବ । ଏହାକହି ସେ ତାକୁ ଘରକୁ ନେଇ ବସେଇ ଖଣ୍ଡେ ପାନ ଖାଇବାକୁ ଦେଲା । ମଳୟବସନ୍ତ ଯେମିତି ପାନ ଖିଲ ଖାଇଚି ତା'ର ଆଉ ମୋହନା କଥା ମନେ ପଡ଼ିଲା ନାହିଁ । ବେଶ୍ୟା ତାକୁ କ'ଣ ଜଡ଼ି ଦେଲା ଯାହାକି ମଳୟବସନ୍ତ ସବୁ ଭୁଲି ସେଇ ବେଶ୍ୟାର ବଶ ହୋଇ ସେଇଠି

ବସି ରହିଲ । କାଠ ଘୋଡ଼ାଟିକ ନେଇ ବେଶ୍ୟାଘର ଛାଡ଼ ଉପରକୁ ଫୋପାଡ଼ ଦେଇ ନିଶ୍ଚିନ୍ତ ହେଲ ।

ତେଣେ ବେଶି ଗର୍ଭବେଦନା ଉଠି ମୋହ୍ନମାର ପ୍ରସବ ହେଲା । ମୋହ୍ନମା ଦେଖିଲ ପୁଅଟିଏ ହୋଇଛ । ତା ପରେ ସେ ମୂର୍ଚ୍ଛା ହୋଇଗଲ । ଆଉ କଛି ଜାଣେ ନାହିଁ । ଏହିବେଳେ ସେ ଦେଶ ରଜାଙ୍କର ଗୋଟିଏ ମଲା ପୁଅ ରାଣୀ ଜନ୍ମ କରିବାରୁ ଧାଇମାନେ ସେ ଛୁଆଟିକୁ ଦୂରକୁ ନେଇ ପୋତିବାକୁ ଯାଉଥିଲେ । ବାଟରେ ଯେମିତି ଦେଖିଲେ ଯୁବତୀଟିଏ ଗୋଟିଏ ସୁନ୍ଦର ପୁଅ ଜାତ କରି ମୋହ ଯାଇଛି, ସେଇଠୁ ଶିଶୁ ପୁଅଟିକୁ ଉଠାଇ ନେଇ ତା ଜାଗାରେ ମଲ ପୁଅଟିକୁ ଥୋଇ ଦେଇଗଲେ । ପୁଅଟିକୁ ନେଇ ରାଣୀକ ଦେଇ ସବୁକଥା କହିବାରୁ, ରାଣୀ ଖୁସି ହୋଇ ବକ୍‌ସିସ୍ ଦେଲେ । ପୁଅଟିକ ଷୀରଦେଇ ଜନ୍ମିତ ପୁଅବୋଲି ପାଳିବାକୁ ଲଗିଲ ।

ଏଣେ ଥଣ୍ଡା ପବନ ଲାଗିବାରୁ ମୋହ୍ନମା ଚେତା ପାଇ ଦେଖିଲ ସ୍ୱାମୀ ନାହାନ୍ତି । ଜନ୍ମ କରିବା ପୁଅ ଦେହରେ ପ୍ରାଣ ନାହିଁ । ସେସବୁ ଦେଖି କାନ୍ଦ କାନ୍ଦ ସ୍ୱାମୀ ଆସିବା ବାଟ ଚାହିଁ ବସି ରହିଲ । ହେଲେ ସେଦିନ ରାତି ଯାଇ ଛଅ ଆରଦିନ ଦୁଇପ୍ରହର ହେଲ । ତେବେ ସୁଦ୍ଧା ମଳୟବସନ୍ତ ଲେଉଟିଲ ନାହିଁ । ତହୁଁ ସେ ନିରାଶ ହୋଇ କାନ୍ଦ କାନ୍ଦ ଯାଇ ନିକଟରେ ଗୋଟିଏ ଗାଁରେ ପହଞ୍ଚିଲ । ସେଠି ଜଣେ ବୁଢ଼ୀ ବ୍ରାହ୍ମଣୀ ପାଖରେ ଦୁଃଖ କହିବାରୁ ବ୍ରାହ୍ମଣୀ ତାକୁ ନେଇ ଘରେ ରଖିଲା ଓ ମୋହ୍ନମା ତାକୁ ଧର୍ମର ମା କଲା । ଏହିପରି ଦୁଃଖ କଷ୍ଟରେ ମୋହ୍ନମାର ଦିନ କଟେ ।

ମଳୟବସନ୍ତ ତେଣେ ବେଶ୍ୟା ଘରେ ମଉଜ କରି ରହୁଥାଏ । ତେଣେ ପୁଅଟି ରଜାଘରେ ବଢ଼ୁଥାଏ । ହେଲେ କେହି କାହାର କଥା ଜାଣନ୍ତି ନାହିଁ ।

ଏହିପରି ଷୋଳବର୍ଷ ବିତିଗଲା । ରଜାଘରେ ପୁଅ ବଢ଼ି ପଢ଼ି ପାରଖ ହେଲାଣି । ପୁଅର ରୂପ ଚନ୍ଦ୍ର ପରି ହୋଇଥିବାରୁ ରଜା ରାଣୀ ତା ନାଁ ଚନ୍ଦ୍ରନାଥ ଦେଇଛନ୍ତି । ସେ ପୁଅ ଦିନେ ପାରିଧି କରି ଲେଉଟିଲାବେଳେ ଯେଉଁ ଗାଁରେ ମୋହିନୀ ଅଛି ସେହି ଗାଁର ଗୋଟିଏ ପୋଖରୀ କୂଳ ବରଗଛ ମୂଳରେ ବସିଛି । ଏହିବେଳେ ମୋହିନୀ ହେଉ ପୋଖରୀକୁ ପାଣି ଆଣିବା ପାଇଁ ଗଲା । ମୋହିନୀ ଦେଖିବାକୁ ତ ଅପୂର୍ବ ସୁନ୍ଦରୀ । ତା ରୂପର ଚମକ ଯେମିତି ଚନ୍ଦ୍ରନାଥ ଆଖିରେ ପଡ଼ିଲା, ସେ ଭାବିଲା ଏପରି ସୁନ୍ଦରୀ କନ୍ୟା ପୁଣି ବ୍ରାହ୍ମଣ ଶାସନରେ ଅଛନ୍ତି ନାଁ ? ଇଏ ନ କନ୍ୟାଙ୍କୁ ବି ରୂପ ଲାବଣ୍ୟରେ ଜିଣି ଯାଉଛି । ଏହା ଭାବି ସେ ଘରକୁ ଆସି ଗୋଟିଏ ବିଶ୍ୱାସୀ ଦାସୀଙ୍କି ଡାକି କହିଲା, ତୁ ଉତ୍ତର ଶାସନ ବ୍ରାହ୍ମଣ ସାହିକି ଯିବୁ ! ସେଠି ବୁଢ଼ୀ ବ୍ରାହ୍ମଣୀର ସୁନ୍ଦର ଝିଅଟିଏ ଅଛି । ତାକୁ କହିବୁ, ଯୁବରାଜ ଚନ୍ଦ୍ରନାଥ ତତେ ଦେଖି ମୋହିତ ହୋଇଛନ୍ତି । ତୁ ଯଦି ତାଙ୍କୁ ବାହାହେବୁ ସେ ତୋତେ ପାଟରାଣୀ କରିବେ । ଯଦି ବାହାହେବାକୁ ଅରାଜି ହେଉ ତା'ହେଲେ ଲୋକ ପଠାଇ ତୋ ଚୁଟି ଧରି ତୋତେ ନେଇଯିବେ । ଏତେକ କାର୍ଯ୍ୟ ତୁ କରି ଦେଲେ ମୁଁ ତୋତେ ସୁନାହାର, ପାଟଶାଢ଼ୀ ଦେବି ! ଏ କଥାଶୁଣି ଦାସୀ ଖୁସି ହୋଇ ଯାଇ ମୋହିନୀ ପାଖରେ ମନେଇ ବନେଇ କହିଲା ସବୁ ।

ଦାସୀ ପାଖରୁ ଏପରି କଥା ଶୁଣି ମୋହିନୀ ଆଗେ କାନ୍ଦ ପକେଇଲା । ତା ପରେ ଭାବିଲା, ମୁଁ ରଜାଝିଅ ହୋଇ ମନ୍ଦପୁଣ୍ୟବନ୍ତ ପରି ପଡ଼ି ମାଇ ଭିକାରୁଣି ପରି ରହିଛି । ତଥାପି ମୁଁ ଏପରି ପୋଡ଼ା କପାଳ ଯେ ରଜାପୁଅ ମୋଠାରୁ ବହେ ସାନ ହୋଇବି ମୋତେ ଦେଖି ଲୋଭ କଲା । ବାହାହେବ ବୋଲି ଦୂତୀ ପଠାଇ ପୁଣି ଧମକେଇଛି । ମୁଁ ହୀନ କପାଳୀ କପାଳରେ ଆଜି କେତେ ଦୁର୍ଦ୍ଦଶା

ଅଛୁ କିଏ ଜାଣେ ? କିନ୍ତୁ ମୁଁ ଯେଉଁ ସ୍ତ୍ରୀକୁ ମନା କରୁଚି ଟୋକା ଲୋକ ପଠାଇ ଚିଠିଖଣ୍ଡ ନେଇଯିବ । ଗଲେ ପୂର୍ବସ୍ମୃତି ଟୋକାଟା ବାଧା ହୋଇ ମାସେ ବାଦେ ବାସି ଫୁଲପରି କରିଦେବ । ଏମିତି କଥା ଯାହା ଅଛି କହିବ ଶୁଣନ୍ତୁ । ତା'ପରେ ମୋତେ ସଙ୍ଗରେ ନେଇ ଯାଆନ୍ତୁ । ଏକଥା ଶୁଣି ଦାସୀ ଖୁସି ହୋଇଯିବାରୁ ମୋହିନୀ ଭାବିଲା, ଯୁବରାଜ ଆସୁ, ତାଙ୍କୁ ମୋ ହାଲ ସବୁ କହିବ । ସେଥିରେ ସେ ଯଦି ଗ୍ରହିଯିବେ ତ ଭଲ, ନହେଲେ ହୀରା ମୁଦି ଚାଟିମି ତା'ର ଆଗରେ ଜୀବନ ହାରେଇ ଦେବ । ଏମିତି ଭାବି ରହିଲା ।

ତେଣେ ଯୁବକ ଚନ୍ଦ୍ରନାଥ ବହୁତ ବିଦ୍ୟା ପଢ଼ି ବିଦ୍ୟାକରଣ ଚରିତ, କାମକଳା ଇତ୍ୟାଦି ପଢ଼ି ପାରଖ ହୋଇ ସେ ସବୁକୁ ପରଖି ଦେଖିବାକୁ ବ୍ୟଗ୍ର । ଦାସୀ ଯେମିତି ମୋହିନୀ ପାଖରୁ ଶୁଣି ଆସି ଜଣାଇଲା, ଚନ୍ଦ୍ରନାଥ ଗ୍ରୀ ୨ ଘଣ୍ଟାକ ଦେହକୁ ତରବର ହୋଇ ଗଲାବେଳେ ଶାସନ ମାଝରେ ଗୋଟିଏ ଗାଈ ବାଛୁରି ବନ୍ଧା ହୋଇଥିବା ଦଉଡ଼ିକୁ ନେଇ ଗଲା । ସେଇଠୁ ବାଛୁରିଟା ବଗିଡ଼ି କହିଲା ମା ! ଦେଖିଲୁଣି ଏ ଟୋକାଟା ଧନ-ପ୍ରେମମଦରେ ମୋତେ ମାନୁ ନାହିଁ । ମୋ ଦଉଡ଼ିଟା ନେଇଗଲା । ମୁଁ ତାକୁ ଅଭିଶାପ ଦେବ । ଗାଈ କହିଲା ନାଇଁରେ ବାପ ! ସେ ପିଲାଟା ଯାଉ ତା ମା ପାଖକୁ ଯାଉଚି । ତୁ ଯେମିତି ମୋତେ ନ ପାଇ ଖୋଜୁ, ଦେଖିଲା ମାତ୍ରେ ପାଗଳ ପରି ଛୁଟିଆସୁ ସେ ବି ସେମିତି ତା ମା ପାଖକୁ ଯାଉଛି । ତାର ଏ ବେଳେ କ'ଣ ହିତାହିତ ବାଛିବାର କଥା ? ତୁ ତାକୁ ଅଭିଶାପ ଦେ ନା । ଗାଈ ବାଛୁରୀଙ୍କ ଏବ୍ବର କଥା ଶୁଣି ଚନ୍ଦ୍ରନାଥ ଶଶ୍ରୁ-ବିଦ୍ୟା ବଳରେ ବୁଝି ବଡ଼ ଆଶ୍ଚର୍ଯ୍ୟ ହୋଇ ଅଟକିଲା । ତା'ପରେ ବାଛୁରିଟାକୁ ଜୁହାର ହୋଇ ଗାଈ ଗୋଡ଼ତଳେ ପଡ଼ି ପଶୁଭିକାରୁ ଗାଈ କହିଲା, ସେଇ ତୋର

ଜନ୍ମକଲା ମା । ତୁ ରାଜାଙ୍କର ପାଳିତ ପୁଅ । ଏହା ବନ୍ଧୁ କନ୍ଧ ମାନଙ୍କ ଆସି ଗାଣ୍ଡ ବାହ୍ନୁଣୀ ନେଇଗଲା ।

ଏ କଥା ଶୁଣି ଚନ୍ଦ୍ରନାଥ ନିଜର ପାପ ପ୍ରସ୍ତାବ କଥା ଭାବି ବହୁତ କାନ୍ଦିଲା । ଶେଷକୁ ପୋଷାକ ଅଳଙ୍କାର ଖୋଲି ସାଧାରଣ ବେଶରେ ଯାଇ ମୋହିନୀକୁ ଡକାଇ ଆଗେ ତା ଗୋଡ଼ତଳେ ଲୋଟି ପଡ଼ିଲା । ମୋହିନୀ ତାକୁ ଉଠାଇ ମୁଣ୍ଡ ଆଉଁସି ଭୋର ଝର ଝର ଲୁହ ବୁହାଇ କାନ୍ଦିଲା ବହୁତ । ଚନ୍ଦ୍ରନାଥ ବେଦନାଭରା କଣ୍ଠରେ ପଚାରିଲା, ମୁଁ ଦାସୀ ପଠାଇ ଆଜି ଯେଉଁ କଥା ତୁମକୁ ଶୁଣାଇଛି ସେ ଦୋଷ ମୋର କ୍ଷମାକର । ତା'ପରେ ତୁମେ କାହାର ଝିଅ, କାହାର ଭାର୍ଯ୍ୟା କାହିଁକି ଏଠାରେ ଏ ଦୀନହୀନ ଭାବରେ ରହିଛ ସବୁ ମୋ ଆଗରେ କୁହ ।

ଏହା ଶୁଣି ମୋହିନୀ ଗଣ୍ଡରେ ଲୁହ ପୋଛି କହିଲା ବାପ ! ତୋର ସବୁ ଦୋଷ କ୍ଷମା କଲି । ଆଜକୁ ଷୋଳବର୍ଷ ଧରି ଏ ଦୁନିଆ ମୋତେ ବିଷପରି ଲାଗୁଥିଲା । ଆଜି ତୋତେ ଦେଖିଲାରୁ ମୋତେ କାହିଁକି ଅମୃତ ପରି ବୋଧ ହେଉଛି । ତୋର ସୁଖ ଐଶ୍ୱର୍ଯ୍ୟ ବଢ଼ୁ । ତୋତେ ଦେଖି ମୋ ହୃଦୟ ଯେମିତି ଆନନ୍ଦରେ ଉଚ୍ଛୁଳିଲାଣି ଦୁଃଖ କଥା ସବୁ କହୁଛି ଶୁଣ । ଏହା କହି ଆଉଥରେ ଲୁହପୋଛି କହିଲା, ମୁଁ ରାଜକନ୍ୟା । ରାଜପୁତ୍ରକୁ ବିଭା ହୋଇ ଶ୍ୱଶୁର ଘରକୁ ଯାଉଥିଲାବେଳେ ବାଟରେ ଗର୍ଭବେଦନା ବଢ଼ିଲା । ସ୍ୱାମୀ ମୁଁ ବହେଁ ଥିବାରୁ ସ୍ୱାମୀ ଗୋଟିଏ ଗଛମୂଳରେ ମୋତେ ବସାଇ ରଡ଼ି ଧାଣ୍ଡ ଖୋଜିବାକୁ ଗଲେ । ସେତେବେଳେ ମୋର ପୁଅଟିଏ ଜନ୍ମ ହେଲା । ସ୍ୱାମୀ ବି ଧାଣ୍ଡ ଆଣି ଆସିଲେ ନାହିଁ । ତାପରେ ମୁଁ ମୂର୍ଚ୍ଛା ହୋଇ ପଡ଼ିଲି । କେତେବେଳ ପରେ ଥଣ୍ଡା ପବନ ଲାଗି ଚେତା ହେବାରୁ ଦେଖିଲି ମୋ ପୁଅଟି ନାହିଁ । ତା ଜାଗାରେ ଗୋଟିଏ ମରା ପୁଅ ଶୋଇ ସେ ପୁଅଟିକୁ କିଏ ନେଇ ଯାଇଛି । ଆଉ ସ୍ୱାମୀ ଆସିଲେ

ନାହିଁ । ସେଇଠୁ କାନ୍ଦ କାନ୍ଦ ଆସିବାରୁ ଏ ବ୍ରାହ୍ମଣୀ ମୋତେ କୁଡ଼ିଆ ଏଣ୍ଡି ଏ ଦେଇ ଆଶ୍ରୟ ଦେଇଛନ୍ତି । ମୁଁ ଯୋଷାକ ତିଆରି କରି ଯାହା ପାଉଛି ସେଥିରେ ଚଳୁଛି । ଏହା ଶୁଣି ଚନ୍ଦ୍ରନାଥ କହିଲା, ଆଉ ସେପରି ଦୁଃଖର କଥା କୁହ ନାହିଁ । ଈଶ୍ବର ବିଧାତା ତୁମକୁ ଯେଉଁ ଦୁଃଖ ଦେଇଛି ତାହା ଶୁଣି ପଥର ମଧ୍ୟ ତରଳି ଯିବ । ଯା'ହଉ ଜୀବନ ଧରି ରହିଛ ଯେତେବେଳେ ଦୁଃଖର ଅବସାନ ଦିନେ ହେବାର ଆଶା ଅଛି । ସେଥିପାଇଁ ଶାସ୍ତ୍ର କହିଛି, ଦୁଃଖ-କଷ୍ଟମଧ୍ୟରେ ବି ଜୀବନ ଧରି ରହିବ । ଧନ ଗଲେ ପୁଣି ମିଳିପାରେ, ପ୍ରାଣଗଲେ ସେ ଶରୀର ଆଉ ମିଳେନାହିଁ ।

'ପୁନର୍ବିତ୍ତଂ ପୁନର୍ମିତ୍ରଂ ପୁନର୍ଦାରା ପୁନର୍ମହୀ
ଏତତ୍ ସର୍ବଂ ପୁନର୍ଲଭ୍ୟଂ ନ ଶରୀର ପୁନଃ ପୁନଃ'

ମୋତେ ବୋଧ ହେଉଛି ଏଣିକି ତୁମର ଦୁଃଖକଷ୍ଟ କମିବ । ଆଚ୍ଛା ମୁଁ ଯାଉଛି । ଦେଖେ ତୁମପାଇଁ କ'ଣ କରିପାରେ । ଏହା କହି ଚନ୍ଦ୍ରନାଥ ସେଠାରୁ ଲେଉଟି ଗଲା ।

ଘରକୁ ଯାଇ ତାକୁ ଯେଉଁ ରାଣୀ ପାଳିଥିଲେ, ତାଙ୍କୁ ପଚାରିଲା ମା ! ମୋତେ ଆଜ ସତକଥା କହିବ, ମୁଁ ଏଇଠି ରହିବ । ନୋହିଲେ ମୋତେ ଆଉ ପାଇବନାହିଁ । ରାଣୀ ଶୁଣି ଆବାକ ହୋଇ ପଚାରିଲେ କେଉଁକଥା କହିବି ? ଚନ୍ଦ୍ରନାଥ କହିଲା, ମୋତେ ତୁମେ ପ୍ରକୃତରେ ଜନ୍ମ କରିଛ ନା ଅନ୍ୟ ଲୋକଠାରୁ ଆଣି ପାଳିଛ, ସତକରି କୁହ । ମୋତେ ଜନ୍ମକରି ବା ପାଳି ଯାହାକର ମୁଁ ତୁମର ପୁଅ । ଏ କଥା ଶୁଣି ରାଣୀ ଭାବିଲେ ପୁଅ ପାଖରେ ମିଛ କଥା କହି ନରକ ଯାତନା ଭୋଗିବା କଥା । ତେଣୁ ସେ ଯେପରି ତାକୁ ଆଣି କ୍ଷୀରଦାନ ଦେଇ ପାଳିଥିଲେ, ସବୁ କହିଲେ । ସେକଥା ଶୁଣି ଚନ୍ଦ୍ରନାଥ ଆଖିରୁ ଝର ଝର ଲୁହ ବୋହିପଡ଼ିଲା । ସେ ଭାବିଲା ମୁଁ କେଡ଼େ ଅନ୍ୟାୟ

କରନ୍ତି । ମୁଁ ରାଜପ୍ରାସାଦରେ ଥାଇ ସୁଖ ଭୋଗ କରୁଛି । ମୋର ଗର୍ଭଧାରିଣୀ ଜନନୀ କେତେ କଷ୍ଟ କରି ବଞ୍ଚୁଛନ୍ତି । ଆଜି ମୁଁ ପାପିଷ୍ଠ ଧନଯୌବନ ମଦରେ ମତ୍ତ ହୋଇ ତାଙ୍କଠାରେ କୁ-ପ୍ରସ୍ତାବ କରିବା ପୂର୍ବରୁ ମଲିନାହିଁ ? ଏମିତି ହବ ଦୁଃଖ କରି ରାଣୀଙ୍କ ଗୋଡ଼ଧରି ଯାହା ଶୁଣିଥିଲା, ଦେଖିଥିଲା, କହିଥିଲା, ଯାହା ବାହୁଣି ହେବାରୁ ଜାଣିଥିଲା, ରାଣୀ ପାଖରେ ସବୁ କହି ନିଜ ଗର୍ଭଧାରୀଙ୍କୁ ଏଠାକୁ ଆଣି ରଖିବାକଥା ଜଣାଇଲା । ତାହାଶୁଣି ରାଣୀ ଖୁସିହୋଇ ରାଜାଙ୍କୁ ସବୁ ଘଟଣା ଜଣାଇବାରୁ ରାଜା ଖୁସି ହୋଇ କହିଲେ, 'ପୁତ୍ର ! ଶୀଘ୍ର ସୁଆରି ନେଇଯାଇ ଜନନୀଙ୍କୁ ଏଠାକୁ ଘେନିଆସ । ତାଙ୍କ ସ୍ୱାମୀ କେଉଁଠି ଅଛନ୍ତି ମୁଁ ଖୋଜାଇ ଆଣି ଦେବାର ଶୀଘ୍ର ବ୍ୟବସ୍ଥା କରୁଛି ।

ରାଜା ଏ କଥା କହିବାରୁ ଚନ୍ଦ୍ରନାଥ ଶୀଘ୍ର ସୁଆରି ନେଇ ମୋହିନୀ ପାଖରେ ପହଞ୍ଚିଲା, ମା ! ତୁମ ପାଖରେ ମଲା ପୁଅକୁ ଶୁଆଇ ଯେଉଁ ନାଆଁନା ପୁଅକୁ ରାଣୀଙ୍କ ଧାଈମାନେ ନେଇଯାଇ ଥିଲେ ମୁଁ ସେହି ପୁଅ । ମୋ ଭାଗ୍ୟବଳରୁ ଏବେ ମୁଁ ତୁମକୁ ଖୋଜି ପାଇଛି, ମୋ ସାଙ୍ଗରେ ଆସ । ଯେତେଦିନ ବଞ୍ଚିବ ସୁଖରେ ରହି ମୋର ସେବା ପାଇବ । ଏହାକହି ସେ ମୋ ପାଖରେ କାନ୍ଦିବାକୁ ଲାଗିଲା । ମୋହିନୀ ଅନ୍ଧ ଚକ୍ଷୁ ପାଇଲା ପରି ହୋଇ ପୁଅ ମୁହଁରେ ଚୋଳ ଦେଲା । ଚନ୍ଦ୍ରନାଥ ସେଠାରୁ ମୋହିନୀକୁ ନେଇ ରାଜପୁରୀରେ ରଖି ପିତାଙ୍କୁ ଖୋଜିବା ପାଇଁ ଚାରିଆଡ଼େ ଲୋକ ପଠାଇଲେ । ଦୂତମାନେ ବଣ ପାହାଡ଼ଠାରୁ ନଗର ପାଟଣାଯାଏ କାଢ ବକାଢ ଖୋଜ କରିଲେ, ଆମେ ବହୁତ ଜାଗା ଛାନି ଛାନି କରି ଖୋଜି ପାଇଲୁ ନାହିଁ । ମାତ୍ର ଜାଣିଛୁ ଏ ଦେଶର ବୁଲାବେଶ୍ୟା ଘରେ ସେହି ରୂପ ଲକ୍ଷଣର ଜଣେ ସୁନ୍ଦର ପୁରୁଷ ରହିଛି । ଏହାଶୁଣି ଚନ୍ଦ୍ରନାଥ ଘୋଡ଼ାରେ ଚଢ଼ି ଯାଇ ବୁଲା ଦାଣ୍ଡଅଣି ଘରେ ଦେଖିଲା, ସେହି

ପୁତ୍ରୁଷଟି ଉତ୍ତର । କଥା ଛଳରେ ତାକୁ ନାଁ । ପଚାରିବାରୁ, ସେ କହିଲା ମୋ ନାଁ । ମଳୟ । ଏହାଜାଣି ଚନ୍ଦ୍ରନାଥ ବୁଲି ବେଶ୍ୟାକୁ ବାନ୍ଧି ଘୋଡ଼ା ଖୁରୁଜରେ କାଟିଦେଇ ବାହାରିଲ କହିଲା, ତୁ ଷୋଳ-ବର୍ଷ ଧରି ଏହି ପୁରୁଷଟିକୁ ରକ୍ଷା କରି ରଖିଛୁ ? ଶୀଘ୍ର ଛାଡ଼ିଦେ, ନୋହିଲେ ତୋତେ ଜୀବନରୁ ମାରିଦେବି ।

ମାଡ଼କୁ ତ ବିଧାତା ଡରେ । ଖୁରୁକପିଠା ବସିବାରୁ ବେଶ୍ୟା ବହୁତ ବହୁତ କହି ମଳୟବସନ୍ତକୁ ପୁଣି ଗିଳାଇ ସରବତ ପିଇବାକୁ ଦେବାରୁ ତା ଦେହରୁ ମୋହନଶା ଛୁଟିଗଲା । ପୂର୍ବକଥା ତା'ର ସ୍ମରଣ ହେଲା । ସେଠାରୁ ସେ ସଙ୍ଗାରୁ କାଠଘୋଡ଼ାଟିକୁ କାଢ଼ି ଆଣି କାହାକୁ କିଛି ନ କହି ସେ ଘୋଡ଼ାରେ ଚଢ଼ି ଯେଉଁଠି ମୋହିନୀକୁ ଛାଡ଼ି ଆସିଥିଲା ସେହି ଜାଗାକୁ ଦୌଡ଼ିଗଲା । ତାକୁ ଏପରି କରିବାର ଦେଖି ଅନ୍ୟ ଲୋକ ଆଶ୍ଚର୍ଯ୍ୟ ହୋଇ ତା ପଛେ ପଛେ ଦୌଡ଼ିଲେ । ମଳୟ ମୋହିନୀକୁ ଛାଡ଼ି ଆସିଥିବା ଗଛମୂଳକୁ ଯାଇ ନାରୀଟିକୁ ନ ପାଇ ମୋହ ହୋଇ ପଡ଼ିଗଲା । ତା ମୁଣ୍ଡ ଫାଟି ହୋଇ ରକ୍ତ ବାହାରିଲା । ତାକୁ ଯେମିତି ସ୍ୱପ୍ନକଥା କାଲିପରି ମନେ ହେଉଥାଏ । କିଛି ସମୟ ପରେ ଚେତା ହେବାରୁ ଦେଖିଲା, ଗୋଟିଏ ସୁନ୍ଦର ଯୁବକ ବସି ତା'ର ରକ୍ତ ବାହାରୁଥିବା ଜାଗାରେ ପଟି ବାନ୍ଧୁଛି । ସେ ତାକୁ ଦେଖି ତୁମେ କିଏ ବୋଲି ପଚାରିବାରୁ, ଚନ୍ଦ୍ରନାଥ ସବୁ ଘଟଣା କହି ତାଙ୍କ ଗୋଡ଼ତଳେ ପଡ଼ିଗଲା ।

ମଳୟବସନ୍ତ ପୁଅର ପରିଚୟ ପାଇ ତା ସଙ୍ଗରେ ମୋହିନୀକୁ ଦେଖିବା ପାଇଁ ଆଉଥରେ ହୋଇଯାଇ ରାଜଧାନୀରେ ପହଞ୍ଚିଲା । ମୋହିନୀ ଦୀର୍ଘଦିନ ପରେ ସ୍ୱାମୀଙ୍କୁ ପାଇ କାନ୍ଦି କାନ୍ଦି ଦୁଃଖ ଭୁଲି ରହିଲା । ମଳୟବସନ୍ତ ଚନ୍ଦ୍ରନାଥକୁ କିଛିଦିନ ରହି କୃତଜ୍ଞତା ଜଣାଇ

ସ୍ତ୍ରୀ ସୂର୍ଯ୍ୟାଙ୍କୁ ସଙ୍ଗରେ ନେଇ ନିଜ ରାଜ୍ୟକୁ ବାହାରିଲେ । ରାଜା ରାଣୀ ତାଙ୍କୁ ଖୁସି ମନରେ ମେଲାଣି ଦେଲେ ।

ମଳୟବସନ୍ତ ସ୍ତ୍ରୀ ସୂର୍ଯ୍ୟା ଧରି ସତର ବର୍ଷରେ ଆସି ନିଜ ଦେଶରେ ପହଞ୍ଚିବାରୁ ମନ୍ଧାତାଦେବ ଦେଶଯାକ ମଙ୍ଗଳ ଉତ୍ସବ କରାଇଲେ । ଜେଲଖାନାରେ ଥିବା ସମସ୍ତ ବନ୍ଦୀଙ୍କୁ ଖଲାସ କରିଦେଲେ, ସେଥିରେ ବଢ଼େଇ ମୁନାରି ବି ଖଲାସ ହୋଇ ଯାଇଥିଲେ । ସେହିପରି ଶାସ୍ତ୍ର କହୁଛି କପାଳ ଲେଖାକୁ ବିଧାତା ବି ଖଣ୍ଡି ପାରେନା । ଯାହା ଲଭ ହେବାର ତାହା ଥାଏ ହୁଏ ।

"ଲାଭଂବ୍ୟମର୍ଥଂ ଲଭତେ ମନୁଷ୍ୟା,
ଦୈବୋଽପିତ ବାରୟିତୁଂ ନ ଶକ୍ତଃ ।"

ମଳୟବସନ୍ତ କାଠ ଘୋଡ଼ାରେ ସ୍ତ୍ରୀ ସୂର୍ଯ୍ୟାଙ୍କୁ ଚଢ଼ାଇ ଆଣି ନଗରୀ ଏ ବଗିଚାରେ ସେ କାଠଘୋଡ଼ାଟିକୁ ରଖି ବାପାଙ୍କ ପାଖକୁ ସ୍ତ୍ରୀ ସୂର୍ଯ୍ୟାଙ୍କୁ ନେଇଗଲେ । ଏଣେ ବଢ଼େଇ ଖଲାସ ହୋଇ ଆସି କାଠ ଘୋଡ଼ା ଖୋଜି ଖୋଜି ଦେଖିଲେ, ଗୋଟିଏ ଗଛରେ ଘୋଡ଼ାଟି ଥୁଆ ହୋଇଛି । ତତ୍‌କ୍ଷଣାତ ସେ ଗଛରେ ଉଠି ଘୋଡ଼ାଟିକୁ ନେଇ ଯାଇ ଗୋଟିଏ ପାହାଡ଼ରେ ଲୁଚାଇ ଦେଲେ ।

ଏଣେ ସତର ବର୍ଷ ପରେ ପିତା ପୁତ୍ରଙ୍କର ଭେଟ ହେବାରୁ ମନ୍ଧାତା ଦେବ ଓ ମଳୟ ଉଭୟେ ବସି କଥାଭାଷା ହେଉଥିଲେ । ମୋହନା ଛାତ ଉପରେ ବୁଲି ଏକାକୀ ପୂର୍ବ ଦୁଃଖ ଭାବୁଥିଲା । ଏହି ସୁଯୋଗରେ ବଢ଼େଇ କାଠ ଘୋଡ଼ାରେ ଚଢ଼ି ଆସି ମୋହନାକୁ ଧରିନେଇ ଘୋଡ଼ାରେ ବସାଇଲା ।

ଆକାଶ ମାର୍ଗରେ କ'ଣ ଗୋଟିଏ ଧୁଁ ଧୁଁ ହୋଇଯାଉଛି ଶୁଣି ଭଞ୍ଜ ଦେଶର କଟକ ରାଜା ଉପରକୁ ବାଣମାରି ଘୋଡ଼ାଟିକୁ ଖସାଇ ପକାଇ ଦେଲେ । ସେ ବଣରେ ବଢ଼େଇ ହାତଗୋଡ଼ କଟି ଯାଇ ଥାଏ । କଟକ ରାଜା ମୋହନାର ସୁନ୍ଦର ରୂପ ଦେଖି ତାଙ୍କୁ

ବାହା ହବାକୁ ନେଇ ଉଆସରେ ରଖାଇଲେ, କାଠ ଘୋଡ଼ାଟାକୁ ମଧ୍ୟ ଯତ୍ନ କରି ରଖି ଦେଲେ । ମୋହିନୀ ତ ମହଲରରୁ ଆସି କାନ୍ଥାରରେ ପଡ଼ିଲା । କାନ୍ଦ କୋଡ଼ ହୋଇ ଭାବିଲା, ହଁଧାଏ । ମୋ କପାଳରେ ଆହୁରି ଏତେ ଦୁଃଖ ଉଣା ଥିଲା ନା ? ହଉ, ବଡ଼ ବଡ଼ଅ କହୁଛନ୍ତି 'ବିପଦେ ହୋଇଲେ ପଡ଼ିତ, ଜେବେ ନୋହିବ ଧୈର୍ଯ୍ୟ-ହତ । ଧୀରେ ବିସ୍ମୃତ କାର୍ଯ୍ୟ କର, ବିପଦୁ ହୋଇବ ଉଦ୍ଧାର ।' ଏ କଥାକୁ ଭାବି ମୋହିନୀ କଉଚ ରାଜାଙ୍କୁ ଡକାଇ କହିଲା, ମୁଁ ରାଜ-କନ୍ୟା । ତୁମେ ରାଜା । ବଡ଼େଇଟା ମୋତେ ଧରି ନେଇଥିଲା । ମୋ ଭାଗ୍ୟବଳରୁ ତୁମେ ମୋତେ ଉଦ୍ଧାର କରି ଆଣିଲ । ମୁଁ ତୁମର ବାହା ହେବି । ହେଲେ ମୁଁ ଗୌରୀ ବ୍ରତ କରିଛି । ସେ ବ୍ରତ ପୂରିବାକୁ ଆହୁରି ବର୍ଷେ ଅଛି । ଏଇ ସମୟ ଭିତରେ କୌଣସି ପୁରୁଷଙ୍କୁ ଛୁଇଁବା ମନା ଅଛି । ମୋ ବ୍ରତ ପୂରିବାକୁ ଏ ବର୍ଷଟି ମୋତେ ସବୁ ଯୋଗେଇ ଦିଅ । ଆଜି ତୁମେ ବର୍ଷଟିଏ ସବୁର କର । କଉଚ ରାଜା ତ ବନଦୁର୍ଗାଙ୍କର ଭକ୍ତ । ସେ ଗଉରୀବ୍ରତ ନାଁ ଶୁଣି ଖୁସି ହେଲେ । ମୋହିନୀକ ବାହା ହବାକୁ ଆଉ କଟାଳ ନ କରି ତାକୁ ଗୋଟିଏ ନିରୋଳାପୁରର ରଖାଇ ଦେଲା । ଦାସୀ ପୋଇଲି ମଧ୍ୟ ଯୋଗେଇ ଦେଲେ ।

ଏମିତି କହି ମୋହିନୀ ଶିବାଣୀକୁ ମୂଳ ଦୁଃଖ ଜଣାଉ ଜଣାଉ ବର୍ଷ ପୂରିବାକୁ ଆଉ ଦୁଇମାସ ବାକିଅଛି । ହନେ ମୋହିନୀ ଭାବିଲା ଦଶମାସ ହେଲା ତ ସ୍ୱାମୀ ମୋତେ ନେଲେ ନାହିଁ । ଆଉ ଦୁଇମାସ ପରେ ଏଇ ମୋତେ ବାହା ହେଲେ କ'ଣ କରିବି । ଏହା ଭାବି ସେ ଗୋଟିଏ କରାଭୁଣୀ ଯୁବତୀକ କହିଲା, ଭଉଣୀ ! ମୋର ଗୋଟିଏ ଉପକାର କର । ମୁଁ ତୋତେ ଅନେକ ଦରବ ଦେବି । ସିଏ ଧନ ଲୋଭରେ କହିଲା, କ'ଣ କରିବ ? ମୋହିନୀ କହିଲା, ତୁ ମୋର ଖଣ୍ଡେ ଚିଠି ନେଇ ମୋ ବାପ ଘରକୁ ଯିବୁ । ସେଠି ମୁଁ ହାଙ୍କୁ

ଦେଖିବୁ, ଦେଖିକ ତେଁ ଦେବ ମୋ ଗାଧ ପାଖରେ ଫୁଲ । ତାଙ୍କୁ ଘେନ ଆସିବୁ । ମୁଁ ସେ ଫୁଲ ନେଇ ଦେବୀ ପୂଜା କରିବ । କିନ୍ତୁ ଏକଥା କାହାକୁ ଜଣାଇବୁ ନାହିଁ । ସିଏ ରାଜ ହେବାରୁ ଭଏ ଛଡ଼ି ଖଣ୍ଡେ ଲେଖି ତାଙ୍କୁ ଦେଇ ପଠାଇ ଦେଲା । କରଭୂଣୀ ଅନେକ ପର୍ବତ ପର୍ବତ ଯାଇ ଉଦର ବନ ବାଦେ ମଳସ୍ବବସନ୍ତ ହାତରେ ଛଡ଼ିଟି ଦେଲା ।

ମୋହିନୀଙ୍କ ହାତରେ ଘେନ ଯିବାରୁ ମଳସ୍ବବସନ୍ତ ବଡ ଭାବନାରେ ଥାଏ । ଏ ଛଡ଼ି ପାଇ ପଢ଼ି ଖୁସି ହେଲା । ସଙ୍ଗେ ସଙ୍ଗେ କରଭୂଣୀକ ବନ୍ଦୀକରି ରଖି ଦେଲା । ତାପରେ ନିଜେ ସାଧୁ ବେଶ ଧରି ଯାଇ ବନ୍ଧ୍ୟ ଦେଶରେ ପହଞ୍ଚି, ରାଜାଘର ପାଖରେ ଖଣ୍ଡେ ଘର ଭଡ଼ା ନେଇ ରହି, ଖବର ଆଣି ପ୍ରଚାର କରିଦେଲା—ଜଣେ ସିଦ୍ଧ ପୁରୁଷ ଆସିଛନ୍ତି । ସେ ମନ୍ତ୍ର, ଯନ୍ତ୍ର, ତନ୍ତ୍ର, କୁହୁକ, ସ୍ତମ୍ଭନ, ମୋହନ ଆଦି ସବୁ ବିଦ୍ୟାରେ ପାରଙ୍ଗମ । ପୀଡ଼ା, ଜମଳ, ମୂର୍ଚ୍ଛା, କୁଷ୍ଠ, ଅପସ୍ମାର ଆଦି ରୋଗକୁ ଦଣ୍ଡକରେ ଭଲ କରିପାରନ୍ତି । ଏକଥା ଚାରିଆଡ଼େ ପ୍ରଚାର ହେବାରୁ ମୋହିନୀ ଜାଣିଲା, ତା ସ୍ବାମୀ ଆସିଲେଣି । ସେଇଠୁ ସେ ଅକସ୍ମାତ ମୂର୍ଚ୍ଛା ଗଲାଭଳି ଘଣ୍ଟାକୁ ଘଣ୍ଟା ହେଲା । କନକ ରାଜା ଗୁଣିଆ ବଇଦ ଯେତେ ଲଗାଇଲେ ଭଲ କରି ପାରିଲେ ନାହିଁ । ସତ ରୋଗ ହିନା ଭଲ ହୁଏ । ମିଛ ରୋଗକୁ ଭଲ କରିବା କେଉଁ ବଇଦ ଗୁଣିଆ ବାପର ସାଧ୍ୟ ।

କନକରାଜା ବହୁତ ଚେଷ୍ଟା କରି ନିରାଶ ହୋଇ ଆସି ନୂଆ ସନ୍ୟାସୀଙ୍କୁ କହିବାରୁ, ସନ୍ୟାସୀ କହିଲେ,ସେ ଅକସ୍ମିକ ପଞ୍ଚଭୂତର ଗ୍ରାସ । ତାଙ୍କୁ ଛଡ଼େଇବାକୁ ହେଲେ ଘଟଣା ସ୍ଥଳକୁ ଯାଇ ମୂଳରୁ ହାଲ ହକିକତ୍ ବୁଝିବାକୁ ହେବ । ତା ପରେ ରୋଗୀର ମନପ୍ରବୃତ୍ତି ବୁଝି ଭୂତ ଦୂର କରିବାକୁ ହେବ । ଏ କଥାରେ କନକ ରାଜା ରାଜି ହୋଇ ସନ୍ୟାସୀଙ୍କୁ ସଙ୍ଗରେ ନେଇ ସବୁ ଦେଖାଇଲା । କମିତି

ମୋହନମାନ ଗାଇଲେ, କାଠ ଘୋଡ଼ା କେଉଁଠି ଅଛି, ମୋହନମା କମିତ ହଜତ ନେଇ ସବୁ କେଟଖେଇ ବୁଝେଇ ଦେଲେ । ମୋହନମା ସାଧୁବେଶୀ ମଳୟକୁ ଶର୍ଧି ମୃଦଙ୍ଗର ମିଛରେ ମୋହ ହୋଇ ମଡ଼ଗଲା । ସେଇଠୁ ମଳୟ କରାତ ରାଜାଙ୍କୁ କହିଲା, ପଞ୍ଚ ମହାଭୂତ ଗ୍ରାସିଛନ୍ତି । କାହାକୁ ଗୋଟେ ଭୂତ ଲାଗିଲେ ରକ୍ଷା ହୁଅନ୍ତା । ଇଏତ ପଞ୍ଚ ମହାଭୂତ ? ରୋଗୀ ବଞ୍ଚେଇବା କାଠିକର ପାଠ ।

ଏ କଥାରେ କରାତ ରାଜା ଭୟପାଇ ପଚାରିଲା, କ ଉପାୟରେ ଯିବେ ସେ ? ମଳୟ ଏବ କହିଲା, ଯୋଗାଣ ଦେଇ, ନୟମ ମାଙ୍କ ରହିଲେ ଛଡେଇହେବ । କରାତ ସେ କଥାରେ ରାଜ ହବାରୁ ମଳୟ କହିଲା, ପଶୁଣ ମହଣ ଶୁଖିଲା ଲଙ୍କା ମରିଚ, ଛେନା ଘିଅ ବଣସେର ଏବଂ ଖଣ୍ଡେ ଭଲ ଶାଢ଼ୀ । ଇଏତ ଗନ୍ଧ ଦ୍ରବ୍ୟ । ଆଉ ମୁଁ ଯେଉଁ ରାତିରେ ଭୂତ ଛଡ଼ାଇବି ସେ ରାତିରେ ରାଜପୁରରେ କୌଣସି ଲୋକ ରାତି ପହରକ ବେଳୁ ବାହାରେ ନାହିଁ । ଯିଏ ରହିବ ତାକୁ ସେହି ଭୂତ ଧରି ସେହିପରି କରି-ଦେବ । ରଜା ଶୁଣି କହିଲେ, ଇଏ ଏମିତ କୋଉ ବଡ଼କଥା ? ସେଇଦିନ ସେ ପଶୁଏ ବସ୍ତା ଲଙ୍କାର ବରାଦ ଦେଇ ଅଣାଇ ଦେଲେ । ଘିଅ ଛେନା ସଙ୍ଗେ ସଙ୍ଗେ ଆସିଲା । ତହିଁ ଆରଦିନ ସାନ୍ଧ୍ୟ ଆଇନ୍ ଜାରି କରିଦେଲେ, ସନ୍ଧ୍ୟା ଆଠଟା ବେଳୁ କେହି ବାହାରିବେ ନାହିଁ । ଭୂତ ଡରରେ ସବୁ କବାଟ କଳ ଖୋଲି ପଡ଼ଲେ । ମଳୟକନ୍ୟା ଗାବଲା, ଦେଖାଯାଉ କରୁ କରୁ କେତେ ଦୂର ଯାଉଛି ।

ଖାଉ ଖାଉ ରାଗେ
ଦେଉ ଦେଉ ଲାଗେ ।
ଲେଖ ଲେଖ କରଣ,
ହସୁ ହସୁ ମରଣ ତ ।

ଏମିତି ଭାବ ଦେଖାଇଲା ଯେ ଲଙ୍କା, ଛେନା, ଘିଅ ସବୁ ପ୍ରସ୍ତୁତ । ସେଇଠୁ ସେ ରାତି ପହରକ ବେଳକୁ ଯାଇ ଲଙ୍କା ବସ୍ତାକୁ ନେଇ ସବୁ ରାଜବାଡ଼ ଚୁଲିକଣ୍ଢେ ବଢ଼ାଇ ଦେଲା । ତାପରେ ମୋହିନୀ ଘରକୁ ଯାଇ କବାଟରେ ଠକ ଠକ କରିବାରୁ ମୋହିନୀ ଦରଜା ଖୋଲି ବାହାରି ଆସିଲା । ଦୁହେଁ ମିଶି କାଠ ଘୋଡ଼ାଟାକୁ ଆଖଡ଼ା ଘରଟାଖରୁ ଆଣି ସିଂହ ଦରଜା ଏ ପାଖରେ ରଖିଲେ । ତା'ପରେ ଦୁହେଁ ମିଶି ଶୁଖିଲା ଲଙ୍କାଗୁଡ଼ାକରେ ନିଆଁ ଲଗାଇ ଦେଇ କାଠ ଘୋଡ଼ାରେ ଚଢ଼ି ବସିଲେ ।

ଏଣେ ଆକାଶରେ ଗୋଟାଏ କ'ଣ ଭୁଁ ଭୁଁ ଆବାଜ ହେଉଛି ଦେଖିବାକୁ ବାହାରିଲାବେଳକୁ ଲଙ୍କା ପୋଡ଼ ଧୂଆଁ ଲାଗି ସମସ୍ତଙ୍କର ଆଖି ପୋଡ଼ିଲା । କଷ୍ଟରେ ରଜା ନିଜେ ବୁଝି ନ ପାରି ପାଇକମାନଙ୍କୁ ହୁକୁମ ଦେଲେ, ବାଣମାରି ଘୋଡ଼ାଟାକୁ ଉଡ଼ାଇ ଦିଅ । ପାଇକମାନେ ଆଖି ମଳି ମଳି କବାଟ କାଳ ପଶିଲେ । କଡ଼େଇଟା ଘୋଡ଼ାହାତ କଟା ଅବସ୍ଥାରେ ପଡ଼ି ସେଇଠି ମରିଗଲା । ମୋହିନୀ ଯେଉଁ କଷ୍ଟର ଯୁବକଟିକୁ ଦୃଷ୍ଟିକରି ପଠାଇଥିଲା ତାକୁ ଖଲାସ କରି ସଖି କରି ରଖିଲା । ମଳୟବସନ୍ତ ନିଜ ରାଜ୍ୟରେ ପହଞ୍ଚି ରଜା ହୋଇ ପୁଅ ଭାର୍ଯ୍ୟାଙ୍କୁ ନେଇ ରାଜୁତି କଲା । ଦିନେ ସେ କାଠ ଘୋଡ଼ାକୁ ଅଣାଇ କହିଲା, ଯେତେ ସବୁ ଅନର୍ଥର ମୂଳ ହେଉଛି ଏ କାଠ ଘୋଡ଼ାଟି । ଏହା କହି ତା ପେଟରେ ଯେଉଁ ଥିବା ଉଡ଼ନ୍ତା ଯନ୍ତ୍ରଟିକୁ କାଢ଼ି ନେଇ ସେ କାଠଘୋଡ଼ାଟାକୁ ଦରଜା ଆଗରେ ରଖି ଦେଇଛି । ବୁଝିଲୁରେ ଅବୋଲକରା ସେ କାଠଘୋଡ଼ାର କଥା । ଏହା କହି ଗୋସେଇଁ ଶୋଇବାକୁ ଗଲେ । ଏ ଗଳ୍ପଟି ଜନାର୍ଦ୍ଦନ ସାର୍ ଥରେ ସ୍କୁଲରେ କହୁଥିଲେ ।

—*—

## ପାରିଜାତ ଫୁଲମାଳ କଥା

କାଠଘୋଡ଼ା କଥା ଶୁଣି ଅବୋଲକରା ଖୁସି ହୋଇ ଗୋସେଇଁ ସଙ୍ଗରେ ବୁଲିଥାଏ । ଏହିପରି କେତେଦିନ ଗଲା ଉତାରୁ ଯାଇ ମାଳବ ଦେଶ ସୀମାରେ ପହଞ୍ଚିଲେ । ସେହି ରାଜ୍ୟରେ ଗୋଟିଏ ଜଙ୍ଗଲ ନଈ କୂଳରେ ଛୋଟିଆଟିଏ ଶିବ ଥାନ୍ତ ନବାସଟିଏ ଦେଖି ଗୋସେଇଁ କହିଲେ, ଅବୋଲକରା ଆଜ ଏଇଠି ରହିବା । ଗୁଲି ବୁଲି ଗୋଡ଼ ଫୁଲିଗଲାଣି । ତୁ ଏଇଠି ଦେବାଳୟ ରଖି କେତେଖଣ୍ଡି କାଠ ଆଣିବୁ ଯା । ଆଉତ ସବୁ ଅଛି, କାଠ ଆଣିଲେ ରନ୍ଧି ଦେଇ କରି ଖାଇଦବା । ଏହା ଶୁଣି ଅବୋଲକରା ସେଇଠି ବୋଝକୁ ରଖି ପାଖ ଜଙ୍ଗଲକୁ କାଠ ଗୋଟେଇ ଆଣିବାକୁ ଗଲା ।

ଏଣେ ଗୋସେଇଁ ନଈରୁ ଗାଧୋଇ ଆସି ସନ୍ଧ୍ୟା କରିବାକୁ ଯାଉଛନ୍ତି । ଏହି ବେଳେ ଅବୋଲକରା କାଠଗୋଛାକ ଆଣି ଦୁମ୍‌କରି ପକେଇ ଦେଇ ବସି ପଡ଼ିଲା । ଗୋସେଇଁ ତା'ର ମୁହଁ ଡେଙ୍ଗ ଡେଙ୍ଗ ଭାବ ଦେଖି ପଚାରିଲେ, ପୁଣି କ'ଣ ଦେଖିଲୁ କିରେ ? ଅବୋଲକରା କହିଲା, ଗୋସେଇଁ ! ମୁଁ କାଠ ଗୋଟେଇ ଆସିଲାବେଳେ ଦେଖିଲି, ଗୋଟିଏ ଶିବାଳୟ ଉପରେ ପଥର ବୃଷଟିଏ ଅଛି । ତା ବେକରେ ଗୋଟିଏ ଏପରି ଫୁଲମାଳ ହୋଇଛି ଯେ ସେପରି ମୁଁ କେଉଁଠି ବି ଦେଖିନାହିଁ । ସେବକଙ୍କୁ ପଚାରିବାରୁ ସେ କହିଲା, ଏଟା ପାରିଜାତ ଫୁଲମାଳ । ଏଠାରେ ମିଳେ ନାହିଁ । କାଏ କେବେ ସ୍ୱର୍ଗରୁ ଆଣି ଏଟାକୁ ଯେ ଦେଇଯାଇଛି ସେଇଦିନୁ ଏ ମାଳଟା ଷଣ୍ଢ ବେକରେ ରହିଛି । ମଉଳୁ ନାହିଁ କି ଝଡ଼ୁ ନାହିଁ । ସେ ଫୁଲମାଳର କଥା ଯେବେ ନ କହିବ ଗୋସେଇଁ ! ମୁଁ ତ ଆଉ ବଞ୍ଚିବି ନାହିଁ ? ଗୋସେଇଁ କହିଲେ, ଆରେ ! ଯୋଉଠି ଯାହା ଦେଖିବୁ

ସବୁ ପଚ୍ଚରବୁ । ମୁଁ କ'ଣ ସବୁକଥା କହିପାରିବ ? ତାଛଡ଼ା ସେ ଫୁଲମାନଙ୍କ କୋଉ ଯୁଗରୁ ଅଁମିଲଣି, ସେ କଥା ପରକରେ କହିହେବ ? ତୁ ଯା, ଗୋଡ଼ହାତ ଧୋଇଆସି ବସ । ସେଗେଉ କରୁଥିବା, ଗପ କହୁଥିବା । ଗୋସେଇଁ ଏ କଥା କହିବାରୁ ଅବୋଲକର ଗାଧୋଇ ଆସି ବସିଲା । ଗୋସେଇଁ ଚୂଲରେ ଭାତ ବସେଇ କହିଲେ, 'ପକା ଆସନ ରଖ ଛତା, ଅବୋଲକରରେ ଶୁଣ ସେ କଥା ।'

ପୂର୍ବକାଳରେ କର୍ଣ୍ଣାଟ ଦେଶରେ କ୍ଷୀରଧର ନାମରେ ଜଣେ ରଜା ଥିଲେ । ତାଙ୍କର ଛଅପୁଅ, ଦୁଇଝିଅ । ଦିନେ ରଜା ସମସ୍ତଙ୍କୁ ବସାଇ ପଚାରିଲେ, ତୁମେ ସବୁ କାହା ଭାଗ୍ୟରେ ଚଳୁଚ ? ବଡ଼ପୁଅ କହିଲା, ମୁଁ ମୋ ଭାଗ୍ୟରେ ଚଳୁଛି । ଅନ୍ୟମାନେ ଯେତେକ କହିଲେ ବାପା ! ଆମେ ସବୁ ତୁମ ଭାଗ୍ୟରେ ଚଳୁଛୁ । ଏ କଥା ଶୁଣି ରଜା ବଡ଼ପୁଅ ଉପରେ ରାଗିକରି କହିଲେ, ତୁ ଯଦି ତୋ ଭାଗ୍ୟରେ ଚଳୁଚୁ ତା ହେଲେ ଆଜି ମୋ ରାଜ୍ୟରୁ ବାହାରିଯା । ବାପାଙ୍କର ଏପରି କଥା ଶୁଣି ବଡ଼ପୁଅ ଭାଗ୍ୟକୁ ସୁମରି ଘରୁ ବାହାରିଲା । ରାଣୀ ବଡ଼ପୁଅ ବାହାରିଯିବାର ଦେଖି କାନ୍ଦିବାକୁ ଲାଗିଲେ । ରଜା ତାଙ୍କ ଉପରେ ବିରକ୍ତ ହୋଇ କହିଲେ, ତୁ ଯଦି ଏପରି ପୁଅ ପାଇଁ ବ୍ୟାକୁଳ ହୋଇଚୁ ତା ହେଲେ ସେଇ ପୁଅ ସଙ୍ଗରେ ଚାଲିଯା । ଏ କଥାରେ ରାଣୀଙ୍କର ଦୁଃଖ ହେବାରୁ ସେ ମଧ୍ୟ ବଡ଼ପୁଅକୁ ସଙ୍ଗରେ ନେଇ ବାହାରି ଗଲେ ।

ମା ପୁଅ ଦୁହେଁ ଅଜଣା ବାଟରେ ମନଇଚ୍ଛା ଯାଉଛନ୍ତି । ଯାଉ ଯାଉ ଅନେକ ଦୂର ଯିବାପରେ ଗୋଟିଏ ବଡ଼ ବନସ୍ତ ପଡ଼ିଲା । ସେ ବଣରେ ଗଛଲତାରେ ବନଜନ୍ତୁ ସବୁ ଖୁନ୍ଦ ହୋଇ ରହିଥାନ୍ତି । ହେଲେ ରଜାପୁଅ ଭନାକର ହାତରେ ଧନୁଶର ଓ ତରବାରି ଥିବାରୁ ଉପଦ୍ରବ ପାଉନାହିଁ ଯାଉଛନ୍ତି । କେତେବାଟ ବଣରେ ଯିବାରୁ

ଦେଖିଲେ ଗୋଟାଏ ଗ୍ରେଟ ନଈ ତପକା ବାଲକା ନାଚଗଲ ପର ବହୁ ଯାଉଚ । ରାଣୀ ମଧୂମଣ୍ଡ ପୁଅକୁ କହିଲେ, ଆଜ ଏଇ ଜାଗାରେ ବିଶ୍ରାମ ନବା । ରତ୍ନାକର ମା' କଥାମାନ ସେଇଠି ରହି ସଞ୍ଜବେଳେ ନଈକ ଗାଧୋଇ ଗଲାବେଳେ ଦେଖିଲେ, ସେ ନଈକୂଳେ ଠାଏ ଠାଏ ବୃତ୍ତକାନ୍ତ ହୀରା ପଡ଼ିଚ । ତାକୁ ବଣ କୁକୁଡ଼ା ଗୋଡ଼ରେ ଛୁଆଁନ୍ତେ ପୋକ ଖୋଜ ଖାଉଛି । ରତ୍ନାକର ତ ରଜାଘର ପୁଅ । ହୀରାର ମୂଲ୍ୟ ଜାଣେ ତ ଭଲେ । ସେଇଠୁ ସେ ହୀରା କେତେଖଣ୍ଡ ଖୋଜ ଆଣି ଅଣ୍ଟାରେ ଖୋସି ଭାବିଲ, ଏଟା ବୋଧେ ଗୋମଣ୍ଡ ନଦୀ । ଶୁଣା ଯାଉଛି—

'ଗୋମସ୍ତ ପତିତବୃଷ୍ଟ୍ୟା ଖଣ୍ଡ ଖଣ୍ଡଂ ମହୀତଳେ,
ଶିବା କାକଃ ଭକ୍ଷନ୍ତି ଯତ୍ନେ ଗୃହ୍ଣାତି ପଣ୍ଡିତା ।'

ଗୋମଣ୍ଡ କୂଳରେ ତା'ର ଅଂଶବୃତ ହୀରାଖ ଶାଳଗ୍ରାମ ପଡ଼ିଥିବାର ଦେଖି ଶିଆଳ କାଉ ଖାଆନ୍ତି ନାହିଁ । ପଣ୍ଡିତ ବେଖି ତାକୁ ଆଦର କରନ୍ତି । ଏହାଭାବ ସେ ହୀରା ଖଣ୍ଡେ ଆଣି ଲୁଚାଇ ରଖିଲ ।

ମା'ଙ୍କ ପାଖକୁ ଆସିବାରୁ, ମଧୂମଣ୍ଡ କହିଲେ—ଆଜକ ଫଳମୂଳଖାଇ ଚଳିଯିବା । ତୁ କାଲ ମୋର ଗୋଟିଏ କଙ୍କଣ ନେଇ ବଜାରକୁ ଯା । ତା'ର ମୂଲ୍ୟ ଦଶହଜାର ଟଙ୍କା, ବିକ ଆଣିବୁ । ସେଥିରେ କିଛିଦିନ ଚଳିବା । ମା' ବୋଲ ମାନ ତହିଁ ଆରଦିନ ଗୋଟିଏ କଙ୍କଣ ନେଇ ରତ୍ନାକର ବଜାରକୁ ଗଲ । ସେଠାକାର ସୌଦାଗର କଏ କହିଲ ଶହେ, କଏ କହିଲ ପାଞ୍ଚଶହ,ରତ୍ନାକର ଦଶହଜାର କହିବାରୁ, ଗୁଣାକର ବୋଲି ଜଣେ ସୌଦାଗର ତାକୁ କହିଲା, ଏହାର ମୂଲ୍ୟ ଦଶହଜାର ହବ । ହେଲେ ଦୁଇକିସ୍ତିରେ ଯବ ଦବ ତା ହେଲେ ମୁଁ ରଖିବ । ସେ କଥାରେ ରତ୍ନାକର ରାଜି ହେବାରୁ, ସେ ଘରକୁ ଅସି ରତ୍ନାକରକୁ ପାଞ୍ଚହଜାର ଟଙ୍କା ଦେଇ

କହିଲା, ବାଳ ମାଝେ ବାଢେ ଆସି ନଦ । ରତ୍ନାକର ତ ବାପଅର୍ଜନ ଖାଇ ବଢ଼ିଛି । ଧନ ଅର୍ଜିଛି କୋଉଠି ଯେ ଅର୍ଜିବାର କଷ୍ଟ ବୁଝିବ ? ସେ କହିଲା, ଆଗୁ ବାକ ପାଞ୍ଚହଜାର ଟଙ୍କା ଗରିବ ଦୁଃଖୀଙ୍କି ଦେଇଦେବ । କୁଆ କୋଇଲିଙ୍କି କତୁ ଖୁଆଇ ଉଡ଼ାଇ ଦେବ । ଏହାକହି ସେ ପାଞ୍ଚହଜାର ନେଇଯିବାରୁ, ମା' କହିଲେ କୋଉଠି ଖଣ୍ଡେ ଜାଗା ଦେଖି, ଘର ଖଣ୍ଡିଏ କରି ରହିବା । ସେଇଠୁ ରତ୍ନାକର ସେଇ ଗୁଣାକାର ବଣିଆ ଗାଁରେ ଖଣ୍ଡିଏ ଜାଗା କିଣି ଘରଟ କୋଠାଟିଏ କରି ରହିଲା ଓ ଲୋକଙ୍କ ଖୋଷଙ୍କି ଦାନ ଦେଉଛି କରୁଥାଏ । ତା'ର ଦାନ ନେଇ, ବୁଢା ଭିକାରି ସବୁ ସ୍ବରଅଙ୍ଗେ ତାର ପୌରୁଷ ଗାଉଥାନ୍ତି ।

ଗୁଣାକାର ସୌଦାଗରର ଏକପୁଅ । କୋଡ଼ପୋଛୁ ପୁଅଟି ମା'ର ବଡ଼ ଗେହ୍ଲା । ଦିନେ ଗୁଣାକାର ଭାବିଲା, ଏଟା ମା'ର ଫୁଲାଣିଆ ହୋଇ ପଢ଼ାଶୁଣା କଲାନାହିଁ ବରଂ ବଡ଼ଲୋକର ସଙ୍ଗରେ ରହି କତୁ ଶିଖୁ । ଏହିକଥା ସାଧବାଣୀକି କହିବାରୁ ସେ ରାଜି ହେଲା । ଗୁଣାକାର ଭାବିଲା, ସେଇ ଯୋଉ ରତ୍ନାକର ନୂଆ ଲୋକଟି ଆସିଛି ସିଏ ବୋଧେ କୌଣସି ରଜାପୁଅ ହବ । ନହେଲେ ଏତେ ଧନରତ୍ନ କୁଆଡ଼ୁ ଆଣନ୍ତା ଯେ ଜଳ ଜଳ ଦାନ କରନ୍ତା । ତାହାର ସଙ୍ଗରେ ଆମର ଏ ଲଫଙ୍ଗାଟାକୁ ଛାଡ଼ିଦେଲେ ବହୁତ ଧନ ଆମେ ଆଣି ପାରିବା । ଏହାଭାବି ଆମ ଦେଶରେ ଶ୍ରେଷ୍ଠମନା ଲୋକ ଯିମିତି ଧନଲୋଭରେ ମହାର୍ଦ୍ଦ ସମ୍ବନ୍ଧ କରନ୍ତି, ସିମିତି ରତ୍ନାକର ସଙ୍ଗରେ ପୁଅର ସଙ୍ଗାତ ବସେଇବାକୁ ଠିକ୍ କଲା । ରତ୍ନାକର ଏକଥା ଶୁଣି ମା'ଙ୍କୁ କହିବାରୁ, ମା' କହିଲେ—ଯେଉଁଠି ଘର କରିବ, ଶାସ୍ତ୍ର କହିଛି—"ଯେଉଁଠି କରିବ ଘର, ଅଧେ ନିଜ ଅଧେ ପର ।" ବଡଲୋକର ପୁଅ ସହ ସଙ୍ଗାତ ବସିବ ଭଲ ହେବ ।

ରତ୍ନାକର କହୁନ୍ତି, ଧନୀ ହେଲେ କ'ଣ ତାଙ୍କର ବିଦ୍ୟା ଅଛି ଯେ ସଙ୍ଗାତ ହେବାକୁ ଯୋଗ୍ୟ ହେବ ସେ ? ବଡ଼ବଡ଼ିଆ କହୁଛନ୍ତି—"ଯା ଏବ ଜଙ୍ଗ ସ ଏବ ବୁଦ୍ଧି

ବୁଦ୍ଧି ଯସ୍ୟ ତସ୍ୟ କର୍ମଂ ସ ଏବ ।"

ହେଲେ ଭୂମେ ମୋତେ କହୁଚ ତା' ହେଲେ ଭୂମ କଥା ମାନିବ । ସେମିତି ଜଣେ ଦୁଇଜଣ ସଙ୍ଗାତ ବସିଲେ । ଇଏ ତ ରଜାଘର ପୁଅ, ଘୋଡ଼ା ହାତୀ ଚଢ଼ି ଜାଣେ । କମାଣ ବନ୍ଧୁକ ଚଳେଇ ପାରେ । ନାନା ରକମ ଖେଳ କସରତ ଶିଖିଚି । ସୌଦାଗର ପୁଅଟା ଏ ସବୁ କୁଆଡୁ ଶିଖିବ ? ସିଏ ରଜାପୁଅ ସଙ୍ଗରେ ମିଶିବାରୁ ଏହାର ଶିକ୍ଷା କଥା ଶୁଣି ତା ମନ ଛକପକ ହେଲା । ସେ ମା ପାଖରେ ଅଳି କଲା ଅଜ ପ୍ରଶ୍ନ କଲେଣି ତ କାଲି ଜଣେ ଘୋଡ଼ା, ପରଦିନ ହାତୀ । ଏମିତିକରି ବଡ଼ଲୋକିଆ ଚାଲି ଚଳି କାଳି ଟଙ୍କା ପଇସା ଉଡ଼େଇଲା । ସୌଦାଗର ସବୁଦା ପ୍ରତି ଦୃଷ୍ଟି ଦେଲା ନାହିଁ । ଗୁଣାକାର ବଣିଆ ଆଉ କହିବ କ'ଣ ? "ଆପଣା ହସ୍ତେ ଜିହ୍ୱା ଛେଦ, କେ ଅଛି ଅନ୍ୟ ପ୍ରତିବାଦୀ ।" ଇମିତି ଭାବ ରହୁଥାଏ ।

ଥରେ ତାର ପୁଅକୁ ମୃଗ ଚଢ଼ା ଶିଖିବାକୁ କହିବାରୁ, ସିଏ ତା ସଙ୍ଗାତକୁ ନେଇ ମୃଗ ଛଳା ହୋଇଥିବା ଜାଗାରେ ବସି ପଶା ଖେଳିଲା । ଯୋଗକୁ ସେଦିନ ଗୁଣାକାରର ପିତୃଶ୍ରାଦ୍ଧ । ସେଥିପାଇଁ ସେ ଆସି ପୁଅକୁ ଡାକି ରତ୍ନାକରକୁ କହିଲା, ବାପ ! ଟିକିଏ ଖିଆଲ ରଖିଥା, ଗୋରୁ ମଇଁଷି ଯେପରି ନ ଖାନ୍ତି । ମୁଁ ସଙ୍ଗେ ସଙ୍ଗେ ଆସିବି । ଏହା କହି ସେ ପୁଅକୁ ଡାକି ନେଇଗଲା । ଏଣେ ରତ୍ନାକର ଆଉ କରେ କ'ଣ, ବାଧ୍ୟ ହୋଇ ମୃଗ କାଣ୍ଡିକି ପହରା ଦେଇ ରହିଲା, ସେଥିପାଇଁ କହୁଥିଲି ମା' ବୁଝିଲେ ନାହିଁ । ଏବେ ଦେଖୁଛି ରଜାପୁଅକୁ ବହୁଆନ୍ କରିଦେଲା ସେ । ହଉ, 'କୁସଙ୍ଗେ ସଙ୍ଗୀତା'

କାଠରେ ଘଣ୍ଟା ଲମ୍ବି ତା' କଥା ଭାବ ବସିଥାଏ । ଏହିବେଳେ ଦଳେ ପାରା ଆସି ସେ ମୂଗ ଗଦାରେ ବସି ମୂଗ ଖାଇଲେ । ସୁନ୍ଦର ପାରାଙ୍କୁ ଦେଖି ସଉଦପୁଅ ଭାବିଲା, ମୁଁ କେତେ ପାରା ପୋଷି ଖାଇବାକୁ ଦେଇ ଉଡ଼ାଉଥିଲି । ତାଙ୍କର ଉଡ଼ାଣ ଲାଗି ଅଜ ବ ବନରେ ତାସ ଦେଖିପାରେ । ଅଥବା ସଙ୍ଗାତ ହେଲୁ ସେହି ପାରାଙ୍କୁ ଖାଇବା ଜାଗାରୁ ତଡ଼ିବାକୁ ହେବ । ହଉ, ଏହା ଭାବି ସେ ଅଣ୍ଟାରୁ ବ୍ରହ୍ମକାନ୍ତ ହୀରାରୁ ଖଣ୍ଡେ କାଢ଼ି ସୌଦାଗର ପୁଅ ରଖିଥିବା ବାଟୋଳ ମୂଳରେ ଯୋଚ ମାରିଦେଲା । ପାରା ବାଟୋଳ ମାରିଲାବେଳକୁ ଦେଖୁ ସୌଦାଗର ଆସୁଛି । ହୀରା ବାଟୋଳିଟି ଅକାଶରେ ଗଲାବେଳେ ଚକ୍ ଚକ୍ ହୋଇ ଯାଇ ମୂଗ ଗଦାରେ ପଡ଼ିବାରୁ ପାରା ଦଳଟି ଉଡ଼ିଗଲେ । ସୌଦାଗର ପଚାରିବାରୁ ରତ୍ନାକର କହିଲା, ଏଥର ତମ ମୂଗ ଗଦା ତୁମେ ଦେଖ ମୁଁ ଯାଉଛି । ଏହା କହି ସେ ଘରକୁ ଚାଲିଗଲା ।

"ମୂଗ ଗଦା ଚୋଳ ନେଲା ଗୁଣାକାର
ଟେଳାଇ ଖେଳାଇ ଦେଖି
ବ୍ରହ୍ମକାନ୍ତ ହୀରା ପାଇଲା ତହିଁରୁ
ଖୁସି ମନେ ନେଲା ଟେକି ।
ଘରେ ନେଇ ହୀରା ପୁଅ ଭାରିଯାକୁ
ଡାକି କହିଲା ଗୁପତେ,
ଯା ସଙ୍ଗେ ମଇତ୍ର ବସିଛୁ ପୁତ୍ର ତା-
ତୁଲ କେ ନାହିଁ ଜଗତେ ।
ଦେଖ ଏ ଅମୂଲ୍ୟ ମଣିକ ବାଟୋଳି
କରି ମାରିଗଲା ଛାଡ଼ି,
ଏ ହୀରାକୁ ରାଜା କରେ ନେଇ ଦେବ
ଆଜ ମୁହିଁ ଭେଟି କରି ।

ଏମନ୍ତ ସାଧବ　　କହନ୍ତେ ତା ସୁତ
ଭାରିଯା କରିଲେ ମନା,
ଫୋପଡ଼ା ବରବ　　ରାଜାଙ୍କୁ କ ଦେବ
ତୁମେ ବଡ଼ ମତିମନା ।
ସାଧବ ବୋଇଲା　　ଦେଲ କ ପାଗଳ
ହୀରା ପଡ଼ିଥିଲେ ପର୍ଣ୍ଣ,
ପ୍ରଥମେ ପ୍ରକାର　　ପଙ୍କେ ପଡ଼ିଥିଲେ
ତାର ମୂଲ କମେ ନାହିଁ ।
ଏତେ ବୋଲି ହୀରା　　ଧରି ଗୁଣାକାର
ବଣିକ ଚଳିଲା ଏକା,
ରାଜା ପାଶେ ଭେଟି　　ହୀରା ଖଣ୍ଡ ଦେଇ
ଆଣିଲା ସେ ଲକ୍ଷେ ଟଙ୍କା ।
ସେ ରାଜା ରାଜାଧି　　ରାଜା ଯେ ବୋଲନ୍ତି
ଏକଇ କନ୍ୟା ତାଙ୍କର,
ପୁତ୍ର ହୀନ ଭୂପ　　କନ୍ୟା ରତନକୁ
କରନ୍ତି ଅତି ଆଦର ।
ନାମ ହୀରାବତୀ　　ହେମଲତା ଦ୍ୟୁତି
ସତର ବରଷୀ ବାଳା,
ଅବିବାହିତା ସେ　　ପିତାଘରେ ରହି
ମନ ସୁଖେ କରେ ଖେଳା ।
ଆଦରେ ସାଖିକା　　ପିଞ୍ଜରାରେ ରଖି
ପଢ଼ାଏ ସକାଳ ସଞ୍ଜେ,
ପଢ଼ାଇଲା ବ୍ରହ୍ମାବେଦେ　　ନାଣ୍ଟ ସାଣ୍ଟ ସ୍ୱର
ବାଛୁ ନେଇ ମନ ରଞ୍ଜେ ।

ସେହି ଝଲଝଲୀ                    ରାଜ ଦୁଲଣାକୁ
    ରଜା ଦେଲେ ସେହି ହାର,
ସୁନାସୂତା ହାର                    ପଦକେ ଲଗାଇ
    ହାର ଗଢ଼ିଦେଲ ଭଲ ।
ହୀରଲଟା ହାର                    ନାଇ ହୀରକଣ୍ଠ
    ସାସୁଙ୍କ ପୁଚ୍ଛିଲ ଯାଇ,
କହିଲେ ସାସୁଏ                    ମାନୁଛ କି ହାର
    ଚୋରାଇଛ ଅଛୁ ମୁଁ ନାଇ ।
ଶୁଣି କର କର                    ହସିଲ ସାସୁକା
    ଭାଷିଲ ଏ ହାରେ ହୀରା—
ଏକ ଲଗିବାରୁ                    ବେକରେ ଦଶୁଛୁ
    ମାଗିଲ ବନଦ ମନ୍ଦ ।
ଶହେ ଆଠ ହୀରା                    ଲଗିଥିଲେ ସିନା
    ତାକୁ କହି ହୀରା ହାର,
କାଣୀ ଅଖିରେ ଏ                    କଜଳ ପରସ୍ତୁ
    ମୋତେ ଲାଗୁଛି ଇତର ।
ସାସୁ କଥା ଶୁଣି                    ସେ ଯୁବତୀ ମଣି
    ଗଳାରୁ ଉତ୍ରର ହାର,
ଫିଙ୍ଗି ଦେଇ ଦୂରେ                    ଅଭିମାନ ଭରେ
    ଶୋଇଲ ସେ ପଲଙ୍କର ।
କନ୍ୟା ମାନ ଦେଖି                    ମାତା ପିତା ତାଙ୍କ
    ପୁଚ୍ଛନ୍ତେ ମାନ କାରଣ,
କନ୍ୟା ବୋଲେ ଶହେ                    ସାତ ହୀରା ଯୋଡ଼
    ସେ ହାର ପୂରଣ କର ।"

କନ୍ୟାର କଥା ଶୁଣି ରାଜା କହିଲେ, ଇଏ କୋଉ ଗୁଆର କଥା ଯେ ଯାହା ହେବ ନାହିଁ ? ଆଚ୍ଛା ତୁ ଲୁଚି ଖିଆପିଆ କର । ଏହା କହି ସେ ମନ୍ତ୍ରୀଙ୍କୁ କହିଲେ, ଦେଖ ମନ୍ତ୍ରୀ ! କାଲି ଯେଉଁ ହୀରା ହାରଟି ସେଠାରେ ଦେଇଥିଲ ତାକୁ ଦେଖିକି ଝିଅ ମୋର କୃଷ୍ଣ ମନ୍ଦିରରେ ମଣ୍ଡାକୁ ବସିଛି । ଆଉ ସେହିପରି ଶହେ ସାତୋଟି ଆଣିଦେଲେ, ସେ ଅଷ୍ଟୋତ୍ତର ଶତହୀରା ହାର କରି ନାଇବ । ହେଲେ ସେମିତି ଅମୂଲ୍ୟ ହୀରା କୋଉଠୁ ପାଇବା ? ମନ୍ତ୍ରୀ ଚିନ୍ତା କରି କହିଲେ, ଯେଉଁ ବଣିଆ ଦେଇଥିଲା ତାକୁଇ ବରାଦ ଦିଅନ୍ତୁ । ସେ ଗୋଟିଏ ଯେପରି ଦେଇଛି ସେହିପରି ଯୋଡ଼ ମିଳାଇ ଯୋଗାଡ଼ କରିଦେବ । ରଜାଙ୍କ ମନକୁ କଥାଟା ପାଇବାରୁ ସେ ଗୁଣାକର ସୌଦାଗରକୁ ଡକାଇ କହିଲେ, ତୁମେ ଯେପରି ହୀରା ଦେଇଛ ସେହିପରି ଆଉ ଶହେ ସାତଖଣ୍ଡ ଆମକୁ ଦିଅ । ସେଥିପାଇଁ ଯାହା ମୂଲ୍ୟ ମାଗିବ ଦେବା । ତୁମେ ମାସକ ମଧ୍ୟରେ ଆଉ ଶହେ ସାତଖଣ୍ଡ ସେହିପରି ହୀରା ନ ଦେଲେ ତୁମ ସହିତ ତୁମ ବଂଶକୁ ଶୂଳରେ ମାରିବା । ଏ କଥା ଶୁଣି ଗୁଣାକରର ହାଲକ ଶୁଖିଗଲା । ସେ ବିନମ୍ର ହୋଇ କହିଲା, ଆଜ୍ଞା ! ଦୁଇମାସ ସମୟ ଦିଅନ୍ତୁ । ଦେଶ ବିଦେଶ ବୁଲି ଖୋଜିବାକୁ ହେବ । ରଜା କହିଲେ, ଆଚ୍ଛା ଦୁଇମାସ ସମୟ ଦେଲି ।

ଗୁଣାକର ସେହି କଥାକୁ ଶୁଣି ଶୁଣି ଘରକୁ ଆସି ମନ ଦୁଃଖ କରି ସବଂଶକୁ ଡକାଇ ରଜାଙ୍କ ଆଜ୍ଞା କଥା କହିଲା । ବଡ଼ପୁଅ କହିଲା, ଦୋଷ ତୁମର । ସାବଧାଣୀ କହିଲା ନାହିଁ ମନ୍ତ୍ରୀ ଏ ବୁଦ୍ଧି ଦେଇଛି । ରଜା ଅନ୍ଧ, ପାଣି ଗୁମ୍ଫାକୁ ମୁହାଁଇଲା ସେଇଆଡ଼େ ଯା'ନ୍ତୁ । ବଡ଼ପୁଅ କହିଲା, ମୁଁ ବାପାଙ୍କୁ ମନା କରିଥିଲି । ସେ ଟଙ୍କା ଲୋଭରେ ଯାଇ ବଂଶମାରୁ ହେଉଛନ୍ତି । 'ଲୋଭରୁ ପାପ

ପାପରୁ ମୃତ୍ୟୁ"ବୋଲି ଯାହା କଥାଅଛି, ଏଠାରେ ଫଳିଛି ସେଇଆ । ମଣିଆଁଙ୍କୁ ଜନ୍ତୁଙ୍କର ବ୍ୟବହାର ଦେଖି ଗୁଣାକାର କହିଲା, ଯୁକ୍ତ—

ଅନ୍ୟଥା ବଳପାରସ୍ୟ ଜବାନଂ ଖସ୍ତ ସମ୍ଭବଃ ।"

ଅଯଥା ଧନ ବଳ ବୃଦ୍ଧି କରିବାକୁ ଯାଇ ଏ ବିପଦ ଘଟିଛି । ସମସ୍ତେ ମିଳି ଶ୍ରୀକୃଷ୍ଣ ଚେଷ୍ଟା ପାଇବାର ପନ୍ଥା ଚିନ୍ତାକଲେ । ଏହାକହି ସମସ୍ତେ ଏକପ୍ରକାର ମନମରା ହୋଇ ରହିଲେ ।

ତହିଁ ଅନ୍ତେ ଚନ୍ଦନ ମହାଜନ ପଶା ଖେଳିବାକୁ ସଙ୍ଗାତକୁ ଡାକିଲା, କହିଲେ—

ମନ୍ଦବେଳେ କାହିଁ ଗୀତରୁଚି ମନର
ଖେଳ ବେଳେ କାହିଁ ଡର,
ସେହିପରି, ସଙ୍ଗାତର ଯୋଗ୍ୟ ମାଉଳ ଦଶା,
ସେଥିରେ ସେ କ'ଣ ଖେଳିବ ପଶା ।

ସେ ମନମରା ହୋଇ ମନା କରିବାରୁ ରତ୍ନାକର ତାକୁ ବଳାଇ ଆଣି ପଚାରିଲା, କ'ଣ ହୋଇଛି ସଙ୍ଗାତ ! ସେ ସବୁକଥା କାନ୍ଦ କାନ୍ଦ କହିଲାରୁ ରତ୍ନାକର କହିଲା—ଆସ୍ତୁ କିଛି ଚିନ୍ତା କରନା । ତମେ ସମସ୍ତେ ଖୋଜ, ମୁଁ ବି ହୀରା ଆଣିବାକୁ ଡାହାଣ ଯାଉଛି । ଏହା କହି ସେ ଘରେ ଆସି ମା'ଙ୍କୁ କହିଲା, ମୁଁ ମନା କରୁଥିଲି । ବେଳେଇ ମୋତେ ସଙ୍ଗାତ କହେଇଲୁ । ଅବଶ୍ୟ ତାଙ୍କ ବଂଶକୁ ରକ୍ଷା ମାରୁଛନ୍ତି, ମୁଁ ବନ୍ଧୁ ହୋଇ ତାଙ୍କୁ କପଟ ଏ ବିପଦରୁ ନ ତାରିବି ? ସେଥିପାଇଁ କଥା ଦେଇ ଆସିଛି । ଶୀଘ୍ର ସାତ ହୀରା ଆଣିଦେଇ ତାଙ୍କ ବଂଶକୁ ଏ ବିପଦରୁ ଉଦ୍ଧାର କରିବି । ମା କହିଲେ, ହଁ ବାପା ! ଶୁଣିବୁ ବୁଢ଼ା କହିଯାଇଛନ୍ତି—

"ଜାନୀୟାତ୍ ପ୍ରେଷଣେ ଭୃତ୍ୟାନ୍ ବାନ୍ଧବାନ୍ ବ୍ୟସନାଗମେ ।
ମିତ୍ରଂ ଚାପଦ କାଳେଷୁ ଭାର୍ଯ୍ୟାଞ୍ଚ ବିଭବ କ୍ଷୟେ ।"

ସଙ୍ଗାତର ଏପରି ବିପଦ ବେଳେ ନଯିବୁ କପରି ? ଯା । ସେଇଠୁ

ତରବାରୀ ତେଜ ରଖ ବଚନ ପାଇଁକ,
ବଚନବେଳେ ଡାକବୁ ଜଗତ ସାଇଁକ ।
ଏବେ ବୋଲି ଦେବଦୁର୍ଗା ହେଲେ ଅନ୍ତର୍ଦ୍ଧାନ
ଚହୁଁ ଆଖି ମଳି ଉଠି ବସିଲ ନନ୍ଦନ ।"

ରତ୍ନାକର ଉଠି ଦେଖିଲେ, ସତକୁ ସତ ଫଳ, କଠଉ ଓ ଝଣ୍ଟା ପଡ଼ିଛି ଥୁଆ ହୋଇଛି । ସେଥିରୁ ସେ ମା ! ମା ! ଡାକ ଯେତେ ଖୋଜିଲେ ଆଉ ଦେବୀଙ୍କ ସନ୍ଧାନ ପାଇଲେ ନାହିଁ ।

ସେଇଠୁ ରତ୍ନାକର ଫଳଟି ଖାଇଦେବାରୁ ଭୋକ ଶୋଷ ପଳାଇଗଲା । ଝଣ୍ଟା ଧରି ପେଣ୍ଡାରେ ଯେମିତି ଚଢ଼ିଲେ କଠଉ ଗୋଡ଼ରୁ ପବନ ବେଗରେ ଉଡ଼ାଇ ନେଇଗଲା । ରତ୍ନାକର ଦକ୍ଷିଣ ଦେଶରେ ଯାଇ ମହେନ୍ଦ୍ର ମେଖଳା ପାହାଡ଼ରେ ଓହ୍ଲାଇଲା ।

ସେଠି ବୃକ୍ଷଡାଳରୁ ପୁଷ୍ପ ହଚକ୍ତ ଉଠି ଦେଖିଲେ ଯେ, ତିନ ହାତ ଲମ୍ବା ପାଦ ଚିହ୍ନ ପଡ଼ିଛି । ସେଇଆକୁ ଅନୁସରି ପାଦଚିହ୍ନ ଦେଖି ଆଗେଇ ଦେଖିଲେ ପାହାଡ଼ ଗୋଟିଏ କନ୍ଦରାରେ ଗୁମ୍ଫାଟିଏ ଅଛି । ସେ ଗୁମ୍ଫାରେ ଗୋଟିଏ ପଲଙ୍କରେ ସୁନ୍ଦରୀ କନ୍ୟା ଶୋଇ-ଅଛି ଅପ୍ସରୁଣୀ କୋଉଠି ଚଳି ବୁଲି ଯାଉଥାଏ । ରତ୍ନାକର ଗୁମ୍ଫା ଭିତରେ ବୁଲି ତାଙ୍କ ପାଖରେ ଯାଇ କନ୍ୟାକୁ ଡାକିବାରୁ, କନ୍ୟା ଉଠି ଦେଖିଲା, ନନ୍ଦପ୍ରାଣ ସୁନ୍ଦର ଯୁବକଟିଏ ତା ପାଖରେ ଛିଡ଼ା ହୋଇଛି । କନ୍ୟା ତାକୁ ଦେଖି ଚମତ୍କୃତ ହୋଇ ପଚାରିଲା, ତୁମେ କିଏ ! କିପରି ଏଠାକୁ ଆସିଲ ? ରତ୍ନାକର ଯେମିତି ସ୍ୱପ୍ନରେ ଦେବୀଙ୍କଠାରୁ ଶୁଣିଥିଲା, ପାଇଥିଲା, ସବୁ କହିଲା । ସେତେବେଳକୁ କନ୍ୟାର କାମଦଶା ଆସିଗଲାଣି ଯେମିତି—

ପ୍ରଥମ ନବୀନ ପ୍ରୀତି ଫଳେ ଶରୀରଙ୍ଗ
ସଙ୍କଳ୍ପ ଲଜ୍ଜାହୀନତା ଶରୀର ବଳଙ୍ଗ,

ସେଠାରୁ ପ୍ରଭାବତୀ ଲାଜ ହୋଇ ଯୁବକଙ୍କୁ କହିଲା—

ସାଗର ତୋଳି ଆସିଲ ଯଦି ନାଗରମଣି ମୋର ଲାଗି
ବରଣ ମାଳ ତୁମକୁ ଦେବ ହୋଇବ ଆଜ ସୌଭାଗୀ ।

ଏହା କହି ସେ ଫୁଲମାଳାଟିଏ ଆଣି ରତ୍ନାକର ବେକରେ ଲମ୍ବାଇ ଦେଲା । ତହୁଁ ଦୁହେଁ ଖଟରେ ବସି ପ୍ରେମାଳାପ କରୁ କରୁ ପ୍ରଭାବତୀ କହିଲା—ବାହାଘର ତ ହେଲେ, ମନର ମିଳନ ହେଲା, ହେଲେ ମୋତେ ଯୋଉ ଅପ୍ସରୀ ବୁଢ଼ୀ ପାଳିଛି ସିଏ ତ ତୁମକୁ ଦେଖିଲେ ପାଚିଲା କଦଳୀ ପରି ଖାଇଦେବ । ଏଠୁ ଯିବ କପରି କହିଲ ? ରତ୍ନାକର କହିଲା, ସେ ଆସିଲେ ତାକୁ ଅଳିଆ ଅଳି କରି ବୁଝେଇ ତାର ମରଣ ଭେଦଟି ଶୁଣିବୁଟି ? ତା ହେଲେ ତାକୁ ମାରି ଦେଇ ଆମେ ଚାଲିଯିବା । ପ୍ରଭାବତୀ ହଉ କହିବାରୁ, ସେଠାରୁ ରତ୍ନାକର ଜଠରୁ ଚଢ଼ି ଆସି ଆଗ ପାହାଡ଼ରେ ଲୁଚି ରହିଲା ।

ଯାହାର ସାହା ଭଗବାନ, ତାକୁ ବାଧିବ କି ବିପତ୍ତି ।

ସେଇଠୁ ଯାଇ ନଡି ପ୍ରଭାବତୀ ଯାଙ୍କଠେ ମିଳାମିଶା କରି ହାଲ-ଚାଲ ବୁଝିଅଛେ । ଏମିତି କଥା କହୁଥିବା ବେଳେ ହଠାତ ମଡ଼ମଡ଼ ଜଣେ ଅପ୍ସରୁଣୀ ଆସି ପହଞ୍ଚିଲା । ତା’ ଆସିବାର ଶବ୍ଦ ପାଇ ପ୍ରଭାବତୀ ଶୀଘ୍ର ମନ୍ତ୍ର ପଢ଼ି ରତ୍ନାକରଙ୍କୁ ମାଛିଟିଏ କରିଦେଲା । ଅପ୍ସରୀ ପହଞ୍ଚି କହିଲା, କଲେ ଝିଅ ! କହିଲେତ ଲାଗିଲୁ । ହେଲେ ମୋତେ କାହିଁକି ନର ନର ଗନ୍ଧ ଲାଗୁଛି କହିଲୁ ? ପ୍ରଭାବତୀ କହିଲା, ନାଇଁ ଲୋ ମା ! ତୋତେ କ’ଣ ରୋଗ ଧରିଲାଣି ଟିକେ । ତୋ କଥାରେ ଚଳିଲା ଭଳି ଲାଗୁଛି । ମୁଁ ଯେମିତି ଦେଖୁଛି ଅପଦେଶକୁ ମନେପକାଇ ଆଜି ମୋତେ ଅଳ୍ପକରେ ଛାଡ଼ିଦେବୁ । ଏହା ଶୁଣି ବୁଢ଼ୀ ତାକୁ କୋଳରେ ବସାଇ ଗେଲ କରି ଲୁହରେ ଦାନ୍ତ କଷାଡ଼ି କହିଲା, ନାଇଁ ଲୋ ଝିଅ ! ମୁଁ କ’ଣ ସଜଳରେ ମରୁଛି ଯେ ସେଥିପାଇଁ ତୋର ଭାବନା ହେଲାଣି । ସେଇଠୁ

ହୀରା ତାକୁ ଦେଖି ହୋଇ ପଚାରିଲା, ଆମ୍ଭ ମା' କୁ କ'ଣ ନ ମାର ରହିବୁ ? ଅସୁରୁଣୀ କହିଲା, ହଁ, ମୋର କୋଳ ପୁଅ ଅଛି ଯେ ମହେନ୍ଦ୍ର କନ୍ଦରର ଲୁହାଖମ୍ବ ଭାଙ୍ଗି ସୁନା ଫରୁଆ କାଢିନେବ ? ପୁଣି ତାକୁ ନେଇ ଫେରିଗଲେ ମୁଁ ଏହା ପାରନ୍ତି ନାହିଁ ? ସେ କଳ ଯୋଜନ ମାଦ୍ଦହୋଇ ଫରୁଆରୁ ସୁନା କୁକୁଡ଼ା କାଢି ଗୋଟାକର ହାଣି ଦେବ ଯେ ମୁଁ ମରିଯିବି । ତୁମ୍ଭକୁ କାହାଁକି କାନ୍ଦୁଛୁ ଝିଅ ।

ଏକଥା ଶୁଣି ହୀରାମଣି ଉଠି ଲୁଣ୍ଡାପାଣି, ଦେଖାଯାଉ ଏମିତି କର ଦ'କୁଣ୍ଡ ବୁଢ଼ୀ ଆଗରେ ଥୋଇ ଦେବାରୁ ଅସୁରୁଣୀ ଢକ ଢକ କର ପେଟେ ପିଇ କୁମ୍ଭକର୍ଣ୍ଣ ପରି ଶୋଇ ପଡ଼ିଲା । ସକାଳୁ ଉଠି ବୁଢ଼ୀ କହିଲା, ବୁଝିଲୁଣି ଝିଅ ! ମୋ ମରଣ କେଉଁଠି ଗହନରେ ଅଛି ? ଏହା କହି ଟେହି ଟେହି ହସି ବାହାରିଗଲା । ମାଛ ରୂପରେ ଥାଇ ରତ୍ନାକର କଥାଟା ଏ, ହଉ ଏଥର ଅଜଗର ହସୁଅଛୁ । କାଲିଠୁ ମର ଭୂତ ହୋଇ ପଡ଼ିଥିବ ।

ବୁଢ଼ୀ ବେଳବୁଡ଼ନ୍ତେ କହି ଫେରିବ ଚରିବୁଲି ଯିବାରୁ, ରତ୍ନାକରକୁ ହୀରାମଣି ସବିଶେଷ କରି ଆଖି ଠାରିଲା, ଶୁଣିଲ ଟି ବୁଢ଼ୀର ମୃତ୍ୟୁଭେଦ । ରତ୍ନାକର କହିଲା, ସବୁ ଶୁଣିଛି । ତୁମେ ସଜବାଜ ହୋଇ ରହିଥାଅ ମୁଁ ବୁଢ଼ୀକି ମାରିଦେଇ ଆସି ନେଇଯିବି । ଏହା କହି ସେ ମହେନ୍ଦ୍ର କନ୍ଦରର ଲୁହା ଖମ୍ବ ଖୋଜିବାକୁ ବାହାରିଲେ । ଦେବୀଦତ୍ତ କଠଉ ମାଡ଼ ଖଣ୍ଡା ଧରି ଯାଇ ଅନେକ ଖୋଜିବା ପରେ ଦେଖିଲା, ମହେନ୍ଦ୍ର ସୁନା ବୋଲି ନଈଟିଏ ବୋହି ଆସୁଛି ଭିତରୁ । ତାକୁ ଅଣ୍ଡା କରି ଭିତରକୁ ଯାଇ ଦେଖିଲା କନ୍ଦର ଭିତରେ ଲୁହା ଖମ୍ବଟିଏ ଠିଆ ହୋଇଛି । ସେଇଟାକୁ ଦେଖି ରତ୍ନାକର ଯେମିତି ଖଣ୍ଡାରେ ପିଟି ଦେଇଛି ଖମ୍ବଟା ଦୁଇଫାଳ ହୋଇଗଲା । ସେଇଠୁ ରତ୍ନାକର ତା ଭିତରୁ ଯେମିତି ସୁନା ଫରୁଆଟିକୁ କାଢି ଆଣିଛି କଣରେ ଅସୁରୁଣୀ ଯେ ଚଲୁଥିଲା, ସେଠାରୁ ଚିତ୍କାର କରି ଧାଇଁ

ଗୁଡ଼ଲ । ଗୁଡ ଆଉଁସି ଆମେ କଏ ମୋଟା ମାରିବାକୁ ଗଲ ନେ ବୋଲି ଉଢ଼ିଟାଏ ଗୁଡ଼ ସେଇ ଜଙ୍ଗଲ ଆଡକୁ ଦୌଡ଼ଲ । ସେତେବେଳକୁ ଚକ୍ ଚକ୍ କରୁଥିବା ଫରୁଆଟିକ ନେଇ ରତ୍ନାକର ତୁ ।

ଫରୁଆ ନେଇଯିବାର ଦେଖି ବୁଢ଼ୀ ତା ପଛରେ ଗୋଡ଼ାଇଲା । ରତ୍ନାକର ତ ଦେଖାଦଉ କଠଉ ମାଡ଼ୁଛୁ । ପଦ୍ମପତ୍ର ଉଡ଼ୁଯାଉଛୁ । ବୁଢ଼ୀଟା ତା ସଙ୍ଗରେ ପାରିବ କାହିଁ ? ଷୋଳ ଯୋଜନ ଯାଏ ଗୋଡ଼ାଇ ଆଉ ଦୌଡ଼ି ପାରିଲା ନାହିଁ । ସେଇଠି ଗଛ କାଟିଲାପରି ପଡିଗଲା । ତେଣେ ରତ୍ନାକର ବୁଝିଁଦେଖିଲା ବୁଢ଼ୀ ଆଉ ଆସୁନାହିଁ । ସେଇଠି ଫରୁଆଟାକୁ ଖଣ୍ଡାରେ ପିଟି ଭାଙ୍ଗିଦେଲାବେଳକୁ ତା' ଭିତରୁ ସୁନାର କୁକୁଡ଼ାଟିଏ ବାହାରିଲା । ରତ୍ନାକର ଦେଖାଦଉ ଖଣ୍ଡାରେ ମେମିତ ତା ବେକରେ ଚୋଟଟାଏ ବସେଇଚି, କୁକୁଡ଼ା ବେକ ଦୁଇଖଣ୍ଡ ହୋଇ ଛିଡିଗଲା । ତେଣେ ବୁଢ଼ୀଟା ଦରିଆ ଗର୍ଜନ ରଡିଟାଏ ଛାଡି ବେକ ମୋଡି ଟଳି ପଡିଲା । ରତ୍ନାକର ଲେଉଟି ଆସି ଦେଖିଲାବେଳକୁ ବୁଢ଼ୀ ଦାନ୍ତ କାମୁଡି ପଡ଼ିଚି ଓ ତା ପାଟିରୁ ଗରଳ ଦ'ଧାର ବୋହି ଯାଉଚି । ତେଣୁ ସେ ଖୁସି ହୋଇ ଆସି ସ୍ୱାବଣକ କହିଲା, ବୁଢ଼ୀକ ଖତମ କରିଦେଇ ଆସିଛି । ଏବେ ତୁମେ ଆସ, ଆମ ଦେଶକୁ ପଳେଇ ଯିବା । ସ୍ୱାବଣକ ଅପେକ୍ଷାରେ ଥାଏ, ରତ୍ନାକର ଡାକିବାରୁ ସେ ଆସି ତା ହାତଧରି ଆସିଲା । କଠଉ ହେଉ ଦୁହିଁଙ୍କୁ ବାଟଚଲି କଷ୍ଟ ବାଧିଲା ନାହିଁ ।

ମାସକଦା ବାଦେ ବହେ ଆସି ରତ୍ନାକର ମା'ଙ୍କୁ ଭେଟି ପ୍ରଣାମ କଲେ । ମା' ପଚାରିଲେ ଆରେ ! କାହାଁ ଝିଅକୁ ତୁ ନେଇଆସିଛୁ ? ପୋଲିସ ଜାଣିଲେ ଅସ୍ତ୍ର ଦେବ ନା । ରତ୍ନାକର କହିଲା, ନାଇଁ ମା ମୁଁ ଏହାକୁ ବାହା ହୋଇ ଆଣିଚ, ଏହା ନା ସ୍ୱାବଣକ । ଯେମିତ

ଘରେ ର କଷ୍ଟକରି ଯାଇ ତାକୁ ଆଣି ପାଳିଛୁ, ସବୁ ମା’ ପାଖରେ କହିବାରୁ ମା’ ବୋଦକୁ ବନ୍ଧେଇ, ମନ୍ତ୍ରୀଏ ଘରକୁ ନେଲେ ।

ଦିନେ ଅପରାହ୍ନ ରତ୍ନାକର ହୀରାବଣ୍ଟା ଦୁହେଁ ପଶା ଖେଳ ବସିଲେ । ଖେଳୁ ଖେଳୁ ରତ୍ନାକର ହାରିଗଲା । ତାକୁ ହାରିଯିବାର ଦେଖି ହୀରାବଣ୍ଟା ବଡ଼ ଜୋର ହୋଇ ହସିଦେଲା । ହସିବାରୁ ମୁହଁରୁ ଗଳ ଗଳ ହୋଇ ସାଙ୍ଗେ ସାଙ୍ଗେ ବ୍ରହ୍ମକାନ୍ତି ହୀରା ବୋଝେ ସତିକ ଝଡ଼ି ପଡ଼ିଲା । ତାହା ଦେଖି ରତ୍ନାକର କାର୍ଯ୍ୟ ହାସଲ ହେଲା ଭାବି ସେ ହୀରାତକ ଗୋଟେଇ ନେଇ ରଖିଦେଲା । ସେଥିରୁ ଶହେ ସାତଟା ନେଇ ସଙ୍ଗାତ ଘରକୁ ଯିବାକୁ ବାହାରିବାରୁ ହୀରାବଣ୍ଟା ପଚାରିଲା, ଏ ହୀରା କାହାକୁ ଦେବାକୁ ନେଉଛ ? ରତ୍ନାକର କହିଲା ଏଇ ହୀରାପାଇଁ ତ ଏତେ କଷ୍ଟ । ଏ ଦେଶର ରଜା ପ୍ରତାପରୁଦ୍ର ତାଙ୍କ ଝିଅ ହୀରାବଣ୍ଟାର ହାର କରିଦେବା ପାଇଁ ଶହେ ସାତଟି ହୀରା ଯୋଗାଡ଼ କରି ନ ଦେଲେ ମୋ ସଙ୍ଗାତକୁ ସବଂଶେ ମାରିବେ ହୁକୁମ କରିଛନ୍ତି । ଏ ହୀରାକୁ ତାଙ୍କୁ ଦେଇ ମିତ୍ର ବଂଶ ରକ୍ଷା କରିବି ।

ଏହା ଶୁଣି ହୀରାବଣ୍ଟା କହିଲା, ଜେମା (ହୀରାବଣ୍ଟା) ଯଦି ହାରକରି ପିନ୍ଧା ମନ କରିଛି ତେବେ ମୋ ପାଖରେ ଗୋଟିଏ ପାରିଜାତ ଫୁଲ ଅଛି ସେଇଟା ନେଇ ଯାଅ ଦିଅ । ସେ ହାରରେ ପଦକ କରି ଲଗାଇ ପିନ୍ଧିଲେ ଭଲ ମାନିବ । ଏହା କହି ସେ ପାରିଜାତ ଫୁଲଟି କାଢ଼ି ଦେଲା । ହୀରା ସହିତ ଫୁଲଟି ନେଇ ରତ୍ନାକର ସଙ୍ଗାତକୁ ଦେଲା । ସଙ୍ଗାତ ନେଇ ତା ବାପକୁ ଦେଲା । ସେ ଧନ ନେଇ ରଜାଙ୍କୁ ଦେବାରୁ ରଜା ତାକୁ ଶହେ ସାତଲକ୍ଷ ଟଙ୍କା ଦେଲେ ଓ ଖଣ୍ଡିଏ ଗାଁ ଜାଗିର ଦେଲେ । ସେ ହୀରାରେ ହାର କରି ସେଥିରେ ପାରିଜାତର ପଦକ ଲଗାଇ ହୀରାବନ୍ତକୁ ଦେବାରୁ ସେ ଖୁସି ହୋଇ ବେକରେ ଝୁଲେଇ ଧାଈ ପାଖକୁ ଯାଇଁ କହିଲା, ଦେଖିଲୁ ମୋ ସାଙ୍ଗ ! ଏଥର ହାରଟା

ଗଳାକୁ ମାନିଲା କି ନାହିଁ ? ସାଧୁ ଟିକିଏ ମୁରୁକି ହସା ଦେଇ କହିଲା—ହୀରା ହାରଟା ମାନିଲା ସିନା, ହେଲେ ଏ ଯୋଉ ଫୁଲଟା ତ ସାଙ୍ଗବାଲିର ହାର ଖୋସାକୁ । ଏମିତି ଫୁଲରେ ଆଉ ଗୋଟାଏ ମାଳ ଯଦି ଗାର ତଳକୁ ଓହଳନ୍ତା ତା'ହେଲେ ସିନା ଭଲ ମାନନ୍ତା । ସାଧୁ ଏକଥା କହିବାରୁ ହାରବନ୍ଧା ତାକୁ କିଛି ନ କହି ଆସି ରୁଷି ଯାଇ ଘରେ ଶୋଇଲା । ତାର ତ ପାଟିରେ ଲାଗିଛି ଲହୁଣୀ ସର, ତେଣୁ ସେ ଧାଇଁଛି ଗଉଡ଼ ଘର'ପଶିଯାଉଛି । ରୁଷିବାରୁ ହାରବନ୍ଧାର ପାଇଛି । ପୁଣି ଫୁଲପାଇଁ ମାନ । ରାଜାରାଣୀ ଯାଇ ପଚାରିଲେ, କରେ ପୁଣି କ'ଣ ପାଇଁ ତୋର ଅଭାବ ଘଟିଲା ? ହାରବନ୍ଧା କହିଲା, ଯେମିତି ପାରିଜାତ ଫୁଲଟିଏ ଦେଖାଇଲ ସେମିତି ଆଉ ଶହେଜଣେଇଶଗୋଟି ଫୁଲ ଆଣିଦେଲେ ମୁଁ ମାଳ କରି ନାଇବି । ବଂଶେ ଭରି ଫୁଲମାଳ ନ ନାଇଲେ ମୁଁ ଜୀବନ ରଖିବି ନାହିଁ ।

ରାଜା କହିଲେ, ହଉ ମୁଁ ଫୁଲ ଅଣାଇ ଦେବି, ତୁ ଉଠି ଖିଆପିଆ କର । ସେଥିରେ ହାରବନ୍ଧା ଉଠି ଖିଆପିଆ କରିବାରୁ ରଜା ପୁଣି ସୌଦାଗରଙ୍କୁ ଡାକି କହିଲେ, ତୁ'ତ ଆମକୁ ବଡ଼ ଅଡୁଆରେ ପକେଇଲୁ । ଆମେ ଛୋଟିଆ ହୀରା ପାଇଁ କହିଲୁ, ତୁ ହୀରା ଦେଲୁ, ସେଥିରେ ଗୋଟିଏ ପାରିଜାତ ଫୁଲ ଦେଇ ପୁଣି ଆମକୁ ହଇରାଣରେ ପକେଇଲୁ । ହଉ, ଏବେ ଶହେ ଜଣେଇଶଟି ପାରିଜାତ ଫୁଲ ଆଣିଦେ । ନୋହିଲେ ମୋ ଝିଅ ମରିବ । ସେଇ ସଙ୍ଗରେ ତୋ ବଂଶ ବୁଡ଼ିବ । ଏକଥା ଶୁଣି ସୁନାକାରର ତାଳୁ ତଳପାରୁ ରକ୍ତ ଶୁଖିଲା । ସେ ଘରକୁ ଆସି ଘଟଣା କହିବାରୁ, ସମସ୍ତେ ବୁଢ଼ାଉପରେ ରାଗିକି ପିଟିବେ କି ମାରିବେ ହଉଛନ୍ତି । ଏଇ ବେଳେ ରତ୍ନାକର ପହଞ୍ଚି କହିଲା, କାହିଁକି ବୁଢ଼ାଟାକୁ ଗାଳି ଦଉଚ ହେ ! କାହାର ତ ପଇସାଟିଏ କମେଇବାକୁ ଜଗମତି ନାହିଁ । ବୁଢ଼ା ଅରଜି ଥୋଇଥିବାରୁ ବସି ଖାଉଚ । ତାଙ୍କୁ ସିନା ଶିଆଳ ଭୂତ ଲାଗିଛି

ହେଉଛ । ମୁଁ ଯାଉଛି ପାରିଜାତ ପୁଲ ଶହେ ଓଣେଇଶଟା ଆଣିଦେବି, ଏହାକହି ଆସି ସେ ହୀରବଣିକ କହିଲା, ଆଜ୍ଞା ଏକ ନେଖଳ ତ ଲଗେଇ ଦେଲ । ଏବେ ନେଖୟଶ ଶହେ ଓଣେଇଶଟି ପାରିଜାତ ପୁଲ ଆଣି ନଦେଲେ ମୋ ସଙ୍ଗାତ କୁଳ ବୁଡ଼ିଯାଉଚ । ମୁଁ ଯାଉଚ କୋଉଠୁ ହେଲେ ପୁଲ ସେତକ ଖୋଜି ନେଇ ଆଣି ଦେବ । ତୁମେ କିଛି ସୁଖରେ ରୁହ । ଏହା ଶୁଣି ହୀରବଣିକ କହିଲା, ସେ ତ ସ୍ୱର୍ଗ ଦରବ, ମର୍ତ୍ତ୍ୟରୁ ମିଳିବ କାହିଁ ? ଯଦି ରାଜକନ୍ୟା ଅଭି-ଳଷିଚ, ତାହାହେଲେ ତୁମେ ମୋ ସାନଭଉଣୀ ପାଖକୁ ଯାଅ । ତା ନାଁ ପାରିଜାତ । ତୁମେ ଯେଉଁ ଅସୁରକୁ ମାରିଲ, ତା'ର ଭଉଣୀ ତାକୁ ମଳୟଗିରିରେ ରଖିଚ । ସେଇ ପାରିଜାତ ପାଖକୁ ଗଲେ ସେ ଅସୁରୁଣୀର ମୃତ୍ୟୁଭେଦ କହିଦେବ । ରାକ୍ଷସୀକୁ ମାରି ପାରିଜାତକୁ ଆଣିପାରିଲେ ତୁମେ ଯେତେଇଚ୍ଛା ସେତେ ପୁଲ ପାଇବ । ପାରିଜାତ ହସିଲେ ପାରିଜାତ ଝଡ଼େ । ଏହାଶୁଣି ରତ୍ନାକର କଠଉ ମାଡ଼ ଖଣ୍ଡା ଧରି ବାହାରିଗଲା । କଠଉ ବଳରେ ପବନ ପରି ଯାଇ ସେ ମଳୟଗିରିରେ ପହଞ୍ଚି ଦେଖେ ଯେ, ଗୋଟିଏ କନ୍ଦରରେ ଭୁବନସୁନ୍ଦରୀ କନ୍ୟାଟିଏ ବସି ମାଳ ଗୁନ୍ଥୁ ଛି । ରତ୍ନାକର ପହଞ୍ଚିବାରୁ ସେ ଅବାକ୍ ହୋଇ କହିଲା, ତୁମେ କିଏ ? କେଉଁଠୁ ଆଇଲ ? ପଳା ପଳା, ନୋହିଲେ ଅସୁରୀ ଏଇନେ ଆଇଲେ ହାଲୁଆ ପରି ତୁମକୁ ଗିଳିଦେବ । ଏହାଶୁଣି ରତ୍ନାକର ହୀରବଣିକର ବର ବୋଲି ପରିଚୟ ଦେଇ ତାରି କଥା ମୁତାବକ ଆସିଚ ବୋଲି କହିବାରୁ, କନ୍ୟା ଖୁସି ହୋଇ ତା ଗଳାରେ ମାଳ ଦେଇ ବର ବରିଲା । ତା'ପରେ ବହେ ପ୍ରେମାଳାପ ସାରିବାରୁ, ପାରିଜାତ ମନ ଉଣାକରି କହିଲା—ସବୁ ତ ବୁଝିଥିଲ, ଚଖିଥିଲ, ଶିଖିଥିଲ ହେଲେ ଅବିକା ବୁଢ଼ୀ ଆସି ତୁମକୁ ଗିଳିଦେଲେ ମୁଁ ସିନା ଚିରଦିନ ବିଧବା ହୋଇ ରହିଥିବି ।

ରତ୍ନାକର କହିଲା, ଏଇଥିପାଇଁ ଦୁଃଖ କରୁଛ ? ମୁଁ ସେ ଅସୁରୁଣୀକି ମାରିଦେବି ନାହିଁ କି ? ପାରିଜାତ କହିଲା, ଭୁଲ୍ଟା ଗପ ଗୁଡ଼େ କରନା । ଯାହାକୁ ଇନ୍ଦ୍ର, ବରୁଣ ପାରୁ ନାହାନ୍ତି, ତାକୁ ମାରିବ ତୁମେ ? ରତ୍ନାକର କହିଲା, ନିଶ୍ଚୟ ମାରିବ । ସେ ଆଜ ଆସିଲେ କଳକୌଶଳ କରି ତା'ଠାରୁ ତା ମୃତ୍ୟୁଭେଦଟା ଜାଣିବଟି । ସେତେବେଳେ କହିଲେ, ମୁଁ ତାକୁ ଧଣ୍ଡେଶ ମାରିଦେବ । ଏତିକିବେଳେ ଅସୁରୁଣୀଟା ପଶିଲେ ! ପଶିଲେ ! ଡାକିଆସିଲା । କନ୍ୟା ତରବରରେ ରତ୍ନାକରକୁ ମନ୍ତ୍ରକରି ମଶା ଗୋଟିଏ କରିଦେବାରୁ ସେ ଉଡ଼ିଯାଇ କଣଣିରେ ବସିଲା । ବୁଢ଼ୀ ଘରକୁ ପଶି କହିଲା ଆଲୋ ତୋଘରଟାରେ ଆଜ ମଣିଷବାସ୍ନା କିଆଁ ଆସିଲା ? ପାରିଜାତ ଶୁଣି କହିଲା—ମଲା ମୋତେ, କଲେ ! ମୋତେ ଖାଇବାକୁ ତୋର ମନ ହେଲାଣି କି ? ହରବାଖତ ମତ ନାଇ ବାସ୍ନା କହୁଛୁ କାହିଁକି ? ଏହା ଶୁଣି ବୁଢ଼ୀ କହିଲା, ଆଲୋ ? ତୁହି ଗୋଟିଏ ମୋର ଜୀବନର ସମ୍ବଳ । ମୁଁ କେବେ ତୋତେ ଖାଇପାରେ ? ଏପରି ଆଉ ଥରେ କହିବୁ ନାହିଁ କହି, କନ୍ୟା ଗାଲରେ ଚୁମା ଦେଲା । ସେଇଠୁ କନ୍ୟା ସଙ୍କେଇ କାନ୍ଦି କହିଲା, ମା' ଲୋ ! ମୁଁ କାଲି ରାତିରେ ସପନ ଦେଖିଲି ତୁ ମରି ଯାଇଛୁ, ମୁଁ କାନ୍ଦୁଛି । ସତେ ତୁ କ'ଣ କେଉଁଠାରେ ମରି ମୋତେ ଛାଡ଼ିଦେଇ ଯିବୁ କି ? ଏ କଥାରେ ବୁଢ଼ୀ କରକର ହସି କହିଲା କାହାର ବଳ ଅଛି ଯେ ମୋତେ ମାରିବ ? ଯମ ଘର ନମସ୍କାର କରି ଗଲାଣି । କ୍ଷୀର ସମୁଦ୍ର ଭିତରେ ପଶି ପାପଦଣ୍ଡି ଗଛର ଚର୍ବିରୁ ତମ୍ବା ଫରୁଆ କାଢ଼ିବ । ତାକୁ ଫିଟେଇ ଚର୍ବିରେ ଅଡ଼ୁଆ ବାଳ ଗୁଡ଼ାଏ ଥିବା ସାପବାଣୀ ପୋକକୁ ଏକାବେଳେକେ ହାଣିଦେବ । ତେବେ ଯାଇ ମୁଁ ମରିବ । ସେ ତ କାଠିକର ଗାଠ । ତାକୁ ମାରିବ କିଏ ଯେ, ତୁ ଭାବୁଛୁ । ସପନ ଧନକୁ ଧଣ୍ଡି କରୁଛୁ । ଏହା କହି ବୁଢ଼ୀ ତାକୁ ଖେଳ କରି ଶେଷରେ ଖାଇ ଶୋଇ ସୁତ ପାହିବାକୁ ବାହାରିଗଲା

ସେ ଯିବାରୁ କନ୍ୟା ରଜାପୁଅଙ୍କୁ ପ୍ରଶ୍ନ କରି କହିଲା, ବୁଢ଼ୀର ମରଣ ଭେଦ ଶୁଣିଛନ୍ତି ? ରତ୍ନାକର କହିଲା—ସବୁ ଶୁଣିଛି, ତୁମେ ଅଟକାରେ ଥାଅ । ମୁଁ ଆଜ ଯାଇ ତାକୁ ମାରିଦେଉଛି । ଏହା କହି ସେ କ୍ଷୀର ସମୁଦ୍ର ଆଡ଼କୁ କଠଉ ମାଡ଼ି ଆଗେଇଲା । ପାରିଜାତ ଠିଆହୋଇ ଭାବୁଥାଏ—ସତେକି ମାଧବ ତାରିବ, ମୋ ମନବାସନା ପୂରିବ ।

ରତ୍ନାକର ଯାଇ କ୍ଷୀର ସମୁଦ୍ର କୂଳରେ ଛିଡ଼ାହୋଇ ଦେଖିଲା, ପାଣିମଝିରେ ଗୋଟିଏ ଜାଗାରେ ତୁଳାଦଣ୍ଡ ପରି ଢେଉ ଉଠୁଛି । ସେଇଠିକି ପହଁରି ଯାଇ ସେ ବୁଡ଼ ଦେଖିଲା, ଫମ୍ପଦଣ୍ଡିରେ ଫରୁଆଟି ରହିଛି । ଖଣ୍ଡା ଚୋଟରେ ଫମ୍ପଦଣ୍ଡି ଭାଙ୍ଗିଦେଇ ଫରୁଆଟି ଉପରକୁ ଆଣି ଭାଙ୍ଗିଦେଇ ତା ଭିତରୁ ଅଣ୍ଡୁଆ ଜାନ ଜଡ଼ା ସାଧବାଣୀ ପୋକଟାକୁ ଚୋଟେ ମାରିଲା ଯେ ଏକବାରେ ଦୁଇଖଣ୍ଡ । ତେଣେ ଅସୁରୁଣୀ ହାତେ ଜିଭ କାଢ଼ି ଏକବାରେ ତଳେପଡ଼ିଲା । ରତ୍ନାକର ଫେରି ଆସି ଦେଖିଲା ଦେବଳକୁ ପାରିଜାତ ବେଶ-ଭୂଷା ହୋଇ ଛିଡ଼ା ହୋଇଛି । ରତ୍ନାକର କହିଲା; ଆଉ ଡେରି କରନାହିଁ ଆସ । ଏହା କହି ସେ ତାକୁ ଧରି କଠଉ ମାଡ଼ି ପବନ ପରି ଆସି ମା ଭାର୍ଯ୍ୟାଙ୍କ ପାଖରେ ପହଞ୍ଚିଲା । ପୁଣି ଗୋଟିଏ ନୂଆ ବୋହୂ ଆଣିବାର ଦେଖି ଶାଶୂ ଖୁସିହୋଇ ବନ୍ଦେଇ ମଙ୍ଗେଇ ନେଇଗଲେ ଘରକୁ । ଭଉଣୀ ଦେଖି ହୀରାବଣ୍ଟର ଗୁପ୍ତ କୁଣ୍ଡେ ମୋଟ ହୋଇଗଲା ।

ଏମିତି ଦିନେ ଦି'ଦିନ ହସଖୁସିରେ କଟିବାରୁ ଦିନେ ଦୁଇ ଭାର୍ଯ୍ୟାଙ୍କୁ ନେଇ ରତ୍ନାକର ପଶାଖେଳି ବସିଲା । ଗୋଟିଏ କଚେବାର ଦାନ ପକେଇ ନପାରି ରତ୍ନାକର ହାରିଯିବାରୁ ଦୁଇକନ୍ୟାଯାକ ଖର ଖର କରି ହସିଦେଲେ । ସେ ହସରେ ସ୍ତ୍ରୀ ପାଟିରୁ ହୀରା, ତା ପାଟିରୁ ପାରିଜାତ ଫୁଲଗୁଡ଼ାକ କୁଢ଼େଇହୋଇ ତଳେପଡ଼ିଲା । ରତ୍ନାକର ଖୁସି

ହୋଇ ସେଥିରୁ ଶହେ ଉଣେଇଶଟି ପାରିଜାତ ଫୁଲ ରଖି ହାକଯାକ ଗ୍ରୀବ ଓ ଫୁଲ ସିନ୍ଧୁକରେ ଭରି ରଖି ଏ ଫୁଲଗୁଡ଼ିକୁ ନେଇ ସଙ୍ଗାତକୁ ଦେଲା । ସେ ନେଇ ହାପାକୁ ଦେଲା । ହାପା ନେଇ ରଜାଙ୍କୁ ଦେଲା । ରଜା ହାରବନ୍ଧଙ୍କ କହାରୁ ହାରବନ୍ଧ ତକ୍ଷଣେ ମାଳଟିଏ ଗୁନ୍ଥି ଗ୍ରୀବହାର ତଳକୁ ଲମ୍ବେଇ ସାର ସାଙ୍ଗକୁ କହିଲା, ଦେଖିଲୁ ଲୋ ସାଙ୍ଗ ! କେମିତି ଏଥର ମାନିଲୁ ? ସାଙ୍ଗ ଦେଖି ହହ ହହ ହସି କହିଲା, ମାନିଲି ଯେ ହେଲେ ଏ ବେଶଭୂଷାଟା ବାଣ୍ଟିଆ ଗଜରସିଙ୍ଗରେ ଫୁଲମାନପରି ହେଲାନା ! ତା କଥାରେ ହାରବନ୍ଧ ବଗିଡ଼ି ଉଠିବାରୁ ସାଙ୍ଗ କହିଲା, ଉଚିତ କହିଲେ କୁଟିତ ଯିବେ । ହିତ କହିଲେ ଲୁମଣ୍ଡ ଲୋକଙ୍କ ରାଗ ବଢ଼େ ସିନା । ମୁଁ କହିଲେ, ତୋର ତ ରାଗ ହଉଚି । କହିବି କେମିତି ? ତୁ ତ ମୋ କଥାକୁ ମାନିବୁ ନାହିଁ । ହାରବନ୍ଧ ଥଣ୍ଡା ହୋଇ ବସି କହିଲା, ମାନିବି ଲୋ ମାନିବି । କହିଲୁ ଆଗ କଣ କହିବୁ । ସାଙ୍ଗ କହିଲା ଶାସ୍ତ୍ର କହୁଛି—

ବିତ୍ତେନ କିଂ ବିତରଣ ଯଦି ନାସ୍ତି ଚିତ୍ତେ
କିଂ ସେବୟା ଯଦି ପରୋପକୃତୌ ନ ଯତ୍ନଃ ।
କିଂ ସଙ୍ଗମେନ ତନୟୋ ଯଦି ନେକ୍ଷଣୀୟଃ,
କିଂ ଯୌବନେନ ବିରହୋ ଯଦି ବଲ୍ଲଭସ୍ୟ ।

ବିତ୍ତଥାଇ ଦାନ ନ ଦେଲେ, ବିଦ୍ୟାରେ ଜ୍ଞାନଥାଇ ପର-ସେବାରେ ନ ଲଗିଲେ, ଯୌବନ ଥାଇ ବିରହହେଲେ, ସଙ୍ଗମକରି ସନ୍ତାନ ନ ହେଲେ ସେଗୁଡ଼ାକର ମୂଲ୍ୟ କଣ ଅଛି ? ତୁ ଗ୍ରୀବ ହାର, ପାରିଜାତ ମାଳ ଓ ସୁନ୍ଦର ରୂପ କାହାକୁ ଦେଖି ମନେଇବୁ ? ଯିଏ ତୋତେ ଏ ବେଶଭୂଷା ଆଣିଦେଲା ତାକୁ ବାହା ହୋଇ ଦେଖେଇଲେ ସିନା ତୋ ମନ ତା ମନ ଖୁସି ହୁଅନ୍ତା । ଗ୍ରୀବବନ୍ଧ କହିଲା ଆଗ୍ରହକଥା କହୁଚୁ ତୁ ଲୋ ! ଆଲୋ ମୁଁ ରଜାଝିଅ ହୋଇ ବଣିଆ ଟୋକାକୁ ବାହାହେବି ? ସାଙ୍ଗ ପୁଣି କର କର ହସି କହିଲା

ଆରେଲ ଓଲା ! ତୁ କପୁରକୁ କଣା କରିଦେଲୁ ନା । ସାଧବ ପୁଅର କ୍ଷମତା ଅଛି ନା ପାରିଜାତ ଆଣିବାକୁ ? ତାର ସିନା ଧନ ଅର୍ଜିବାର ମୁଣ୍ଡ । ସ୍ବରଗ ଚଢ଼ିଆଣି ଦେବାକୁ ତା' ମୁଣ୍ଡଥିଲା ନା । ସ୍ୱାକୁ ମଗ ବର୍ଗିବେଶର ରଜାପୁଅ ତଣ୍ଡାଇ ଆଣି ଦେଇଛି । ତା ସାଙ୍ଗରେ ସଙ୍ଗାତ ବସିଥିବାରୁ ସିନା ସାଧବଙ୍କଣ ବଞ୍ଚିଲ, ନୋହିଲେ ମରିଥାନ୍ତେଟି । ତୁ ଯଦି ତାକୁ ବାହାହୋଇ ଏଇବର୍ଷ ନେଇଖେଇବୁ ତେବେ ମାନିବ । ନୋହିଲେ ତୋ ରୂପଯୌବନକୁ ଏ ସୁନ୍ଦର ବେଶ ମଶାଣି ଫୁଲ ପରି ହେବ ସିନା ।

ସାଗ୍ର କଥା ଶୁଣି ହାରବଳ୍ଗର ହୃଦୟ ଘାଞ୍ଚରେ ମୋଟାଏ ଚମକ ଖେଳିଗଲା । ସେଇଠୁ ଖାଇବା ଶୋଇବା ଲାଗିଲା ବାପଚ୍ଚ । ହାରମାଳ ସବୁ ଛଡ଼ାଇ ଫୋପାଡ଼ିଦେଇ ପଲଙ୍କରେ ମୁହଁ ମାଡ଼ି ଶୋଇପଡ଼ିଲା । ଦାସୀଠାରୁ ସଇସାଥି ଯେତେ ଡାକିଲେ, ଉଠିଲା ନାହିଁ । ମା' ଆସି ଡାକିଲେ । ପୁରପାକ ଚହଳ ପଡ଼ିଲା । ଶେଷକୁ ରଜା ଅସି ଡାକବାରୁ—କହିଲା, ବାପା ! ତୁମେ ରଜା ହୋଇ ସମସ୍ତଙ୍କର ଗୁହାରି ଫେରାଦ ବୁଝୁଛନ୍ତି । କହୁ ମୋ କଥା କି କିଛି ବୁଝିଲ ନାହିଁ ? ମୁଁ ଆଜକ ପାଞ୍ଚବର୍ଷ ହେଲା ଯୁବତୀ ହୋଇ ଘରେ ଅଛି, ହେଲେ ତ ମୋ ଚିନ୍ତା କରୁନାହଁ । ମୁଁ ଏବେ ନିଜ ଇଚ୍ଛାରେ ବରଟିଏ ବାଛୁଚ, ତାଙ୍କ ସଙ୍ଗରେ ମୋତେ ବିଭା କରେଇଦିଅ । ରଜା ଖୁସି ହୋଇ କହିଲେ, ମୁଁ ପାଞ୍ଚବର୍ଷ ଧରି ତୋ ଲାଗି ଧାଙ୍ଗ ଖୋଜୁଛି ପାଇନି ମା । ତୁ ଯଦି ନିଜେ ପସନ୍ଦ କରି ପାଇଛୁ, ଭଲ କଥା । ତାହାରି ସଙ୍ଗରେ ବାହାଘର କରିଦେବା । ସେ କିଏ ମା ?

ହାରବଳୀ କହିଲା, ଏଇ ପାରିଜାତ ଫୁଲ ଯିଏ ଆଣି ଦେଇଛନ୍ତି ମୁଁ ତାଙ୍କୁ ବିଭା ହେବି । ଏହା ଶୁଣି ରଜା କାନରେ ହାତ ଦେଇ କହିଲେ—ଛି ଛି, କେତେ ପାପ କରି ମୁଁ ତୋତେ ଜନ୍ମ ଦେଇଥିଲି, ତୁ ରଜାଝିଅ ହୋଇ ବଣିଆ ଟୋକାକୁ ବର ପସନ୍ଦ

କଲ୍ ! ଗୁଣାକାର କହୁଥିଲେ ତା ପୁଅ ଏସବୁ ଯୋଗାଡ଼ କରିଦେଇଛି ।
ଭାଗବତୀ କହିଲେ ବାପା ! ତୁମେ ରଜା ହୋଇ କଥାଟା ପୁଣି ନବୁଝି
ଅଧାବାଟରୁ ଚମକୁଛ କାହିଁକି ? ବୁଝି ପାରୁନାହଁ ଯେ, ଏ
ଅମୂଲ୍ୟ ଧନ ଆଣି ଦେବାରେ ମୁଣ୍ଡ କ'ଣ ବଳିଆ ଟୋକାର ଥିଲା ?
ଏ ସବୁ କୁଳୀନଘରା ବର୍ଗୀ ଦେଶର କାର୍ତ୍ତିଚନ୍ଦ୍ରଙ୍କ ପୁଅ ରତ୍ନାକର
ଆଣି ଦେଇଅଛନ୍ତି । ସେଇଠୁ ଉଚ୍ଚ ନକରି ରଜା ଆସି ବୁଝିଲେ ଝିଅ
କଥା ସବୁ ଠିକ୍ । ତେଣୁ ହାତ ପଠେଇ ରତ୍ନାକରକୁ ନେଇଯାଇ
କହିଲେ ତୁମ ସଙ୍ଗରେ ମୋର ଏକମାତ୍ର କନ୍ୟା ଭାଗବତୀକୁ ବାହା
ଦେବି । ଏଥିରେ ତୁମର ମତ କଅଣ ? ରତ୍ନାକର କହିଲା, ମୁଁ
ବାପାଙ୍କ ସାଙ୍ଗରେ ତର୍କ କରି ପାଞ୍ଚବର୍ଷ ହେଲା ରାଜ୍ୟ ଛାଡ଼ି ଆସି
ଆପଣଙ୍କ ରାଜ୍ୟରେ ଅଛି । ସଙ୍ଗରେ ମୋ ମା' ଅଛନ୍ତି, ମୁଁ ତାଙ୍କୁ ନ
ପଚାରି କିଛି କହି ପାରିବି ନାହିଁ । ରଜା ଖୁସି ହୋଇ କହିଲେ,
ଶୀଘ୍ର ଯାଇ ବୁଝି ଆସ । ତହୁଁ ରତ୍ନାକର ଆସି ମା'ଙ୍କ ସବୁ ଘଟଣା
କହିଲା ।

ମା' କହିଲେ, ତୋର ତ ଗୋଟିକରୁ ଯୋଡ଼ାଏ ଭାର୍ଯ୍ୟା ।
ପୁଣି ଗୋଟିଏ ବାହାହବାକୁ ମୁଁ କିପରି କହିବି ? ତୋ ବଡ଼
ଭାର୍ଯ୍ୟାଠୁ ବୁଝି ସେ ଯାହା କହିବ ତାହା କର । ସେଇଠୁ ଭାଗବତୀ
କହିଲା—ଗୋରୁ, କନ୍ୟା, ଭୂମି ଯାଚିଲେ ଛାଡ଼ିବାକୁ ନାହିଁ । ତୁମେ
ପାଗଳ ହେଲ କି ? ରଜାମାନେ ଗଣ୍ଡା ଗଣ୍ଡା ରାଣୀ କରନ୍ତି ପରା ।
ତୁମେ ଶୀଘ୍ର ଯାଇ ତାଙ୍କୁ ବାହା ହବଟି । ଆମର କିଛି ଅଭାବ
ହବ ନାହିଁ ଯେ କଳ ଲାଗିବ ? ଏହା ଶୁଣି ରତ୍ନାକର ଯାଇ ପ୍ରତାପ-
ରୁଦ୍ରଙ୍କୁ ଜଣାଇବାରୁ ସେ ଶୁଭକ୍ଷଣର ଭାଗବତୀକୁ ରତ୍ନାକର ସଙ୍ଗରେ
ବାହା କରେଇଦେଲେ । ସେଠି କିଛିଦିନ ରହିବାପରେ ରତ୍ନାକର
କହିଲା, ପାଞ୍ଚବର୍ଷ ହେଲା ଦେଶଛଡ଼ା ହୋଇଛି । ବର୍ତ୍ତମାନ
ଦେଶକୁ ଫେରିବାକୁ ମନ ହେଉଛି । ଏହା ଶୁଣି ପ୍ରତାପରୁଦ୍ର ବହୁତ

ଯାନ-ଯୌତୁକ ଜାହାଜରେ ବୋଝେଇ କରି କନ୍ୟା ଓ ଜ୍ୱାଇଁଙ୍କୁ ବିଦାୟ ଦେଲେ । ରତ୍ନାକର ତିନି ଭାର୍ଯ୍ୟା ଓ ମା'ଙ୍କୁ ନେଇ ସମୁଦ୍ରରେ ଆସିଲାବେଳେ ବୋଇତରେ ବସି ପଶାଖେଳିଲେ । କିଛି ସମୟ ପରେ ସେ ଖେଳରେ ହାରିଯିବାରୁ ହୀରାବତୀ ହାରିଜାତ ଉଭେଁ ହସିଦେଲେ । ହସିବା ମାତ୍ରେ ତାଙ୍କ ହସରୁ ହୀରା ପାଣିଜାତ ଝରି ପଡ଼ିଲା । ହସରୁ ପାଣିଜାତ ହୀରା ଝରିବାର ଦେଖି ହାରାବତୀ ପାଟି ଅଠା ଅଠା ହୋଇଗଲା । ସେ ଉଠିଯାଇ ବୋଇତର ଗୋଟିଏ କୋଣରେ ବସି ହୀରା ଓ ପାଣିଜାତ ମାଳ ଦୁଇଟି ଛିଣ୍ଡାଇ ଫିଙ୍ଗିଦେଲା । ମନେମନେ ଘୃଣାରେ କହିଲା—ଛି, ମୁଁ ନ ଜାଣି ଆଜଯାଏ ଏହି ସଉତୁଣୀମାନଙ୍କର ଉଗାର ଅଇଁଠାକୁ ହାର କରି ବେକରେ ପିନ୍ଧିଛି ? ଏମିତି ନିଜକୁ କିଛି ଭାବି ଏକା ବସି ରହିଲା ।

ନିର୍ବେଦ ଶାନ୍ତ ହେବାରୁ ହାରାବତୀ ଭାବିଲା, ମୁଁ ଏ ଅଲାଜୁକ ମୁହଁକୁ ସଉତୁଣୀଙ୍କି ଦେଖାଇବି କିପରି ? ତା ଅପେକ୍ଷା ପାଣିରେ ବୁଡ଼ି ମରିବା ଭଲ । ଏହା ଭାବି ମୁହଁରେ ଲୁଗା ବାନ୍ଧି ସେ ଜାହାଜ ହରେଇ ଦବାକୁ ଯେମିତି ଡେଇଁ ପଡୁଛି, ସାଗର ତନୟା ଲକ୍ଷ୍ମୀ ତାକୁ ଉଠେଇ ନେଲେ । ତା'ର ଆତ୍ମହତ୍ୟା କାରଣ ପଚାରିବାରୁ, ହାରାବତୀ ଅପମାନ ପାଇଥିବାର ଘଟଣା ସବୁ କହିଲା । ସେଇଠୁ ଲକ୍ଷ୍ମୀ ତାକୁ କୋଳକୁ ଉଠାଇନେଇ କହିଲେ—ଛି, ଆତ୍ମହତ୍ୟା କରନା । ନେଇଟି ଯା ମୁଁ ବର ଦେଉଛି । ତୋ ହସରୁ ମୁକୁତା ଝରିବ । ଏହା କହି ତାକୁ ପଠାଇଦେଲେ । କନ୍ୟା ବର ଠାଇ ଆସି ଶୋଇଲା ଯେ କେହି ଜାଣନ୍ତି ନାହିଁ ।

ତହିଁ ଆରଦିନ ପୁଣି ତିନି ଭାର୍ଯ୍ୟାଙ୍କୁ ନେଇ ରତ୍ନାକର ପଶା ଖେଳ ବସିବାରୁ—ହୀରାବତୀ ଓ ହାରାବତୀ ଉଭେଁ ଜିତିଲେ । ହୀରାବତୀ ହସିଦେଲା, ହୀରା ଝରିଲା । ହାରାବତୀ ହସିଦେଲା, ଗଳ ଗଳ କରି ମୁକ୍ତା ପଡ଼ିଲା । ସେଇଠୁ ରତ୍ନାକର ମା'ଙ୍କୁ ଜାଣ କହିଲା

ସୁନ୍ଦର ରୂପ ସୁଠାମ ଆକୃତି
କୁଳ ନ କୁଟନ ସାମ୍ପ୍ରକୃତ
ସଦ୍‌ବୃତ୍ତମେଧା ବିଦ୍ୟା ସକଳ
ସତ୍‌ଜନଙ୍କୁ ନ ମିଳେ ସେ ଫଳ ।

ପୂର୍ବ ଜନ୍ମେ ଯା ସଞ୍ଚିତ ଯେ ସୁକୃତ ସୌଭାଗ୍ୟ ସୁସମୟେ ଫଳେ, ବୃକ୍ଷବୃକ୍ଷ ଫଳନ୍ତି ।

ଏହାକହି ଗୋସାଇଁ ଉଠିଗଲେ । ଏ ଗଳ୍ପଟି ଜେଜେଙ୍କ-ଠାରୁ ଶୁଣିଥିଲି ମୁଁ ।

## ରତ୍ନମାଳି କଥା

*——

ତ'ଭକବାନେ ଗୋସେଇଁ, ଅବୋଲକର ବହେଁ ଗୋଡ଼ରୁ ବ୍ୟଥା ମାରି ଉଠେଣ୍ଟୁ ପୋଛି ପାଇ ଯାଇ ବାଟରେ ଗୋଟାଏ ଲମ୍ବା ଜଙ୍ଗଲାଟ ପଡ଼ିଲା ସେ ଜଙ୍ଗଲରେ ବାଘ ଭାଲୁ ସାଲୁ ସାଲୁ ଦେଖାଯାନ୍ତି । ଗୋସେଇଁ କହିଲେ, ଆରେ ଅବୋଲକର ଚଞ୍ଚଳ ଗୁଳେଇଆସିଲେ ଜଙ୍ଗଲା ଯନ୍ତ୍ରଣା ଲାଗୁଛି, ସଞ୍ଜହେଲେ ମରିବା କଥା । ହେଲେ ଗୋସେଇଁକଥା ଶୁଣୁଛ କିଏ ? ଅବୋଲକର କହେବାଟ ପଛରେ ଉହୁ ଦୂର ଗେଳି କ'ଣ ଗୋଟାଏ ଦେଖୁଛି । ଗୋସେଇଁ ପଛକୁ ବୁଲି ଦେଖିଲେ ଦେଖିଲେ ବାଲକ ଟୋକା ଦେଖିବାରେ ବ୍ୟସ୍ତ । ଗୋସେଇଁ ଗୋଟାଏ ଜର୍ଦ୍ଦାଚ ଡାକ ଦେବାରୁ ଅବୋଲକର କହିଲା, ଗୋସେଇଁ ! ପଳାଉଛ କ'ଣ ? କେମିତି ଗଛଟିଏ ଏଠି କିଏ ଜାଣେ ଦେଖିଯାଅ । ଗୋସେଇଁ କହିଲେ, ତୁ ଏ ବାଘଭାଲୁ ଜାଗାରୁ ଟ ଚେ ଆସିବୁଟି । ମୁଁ ସେ ପିଲ୍ଲଳ ଖମ୍ବରେ ମାଙ୍କଡ଼ଟାକୁ ଦେଖି ଆସିଛି । ଏହା କହି ସେ ଚଲେଇବାରୁ ଅବୋଲକର କୌଣସି ଜାଗେ ଜଙ୍ଗଲରେ ଯାଇ ଗୋଟିଏ ଅମୁହାଁ ଦେଉଳ ଦାଢ଼ରେ ଖଣ୍ଡିଏ ଲଥିକରି ଧୋଇ କହିଲା,

କୋଦଶର୍ଣ ! ଆଜ୍ଞା ଅଦୋଳାଙ୍କର ଏଠୁ ନ ଉଠନ୍ତୁ । ଝମ୍ପରେ ଥୁଆ ମାଙ୍କଡ଼ ବେକରେ ଥିବା ଗଡ଼ମାଳା କଥା କହିବତ ପିଭ, ବୋଲିଲେ, କୃମ ଗର୍ଣ୍ଣିକା ଅାଗରେ ଥୁଆଗଲା ।

ଗୋପେଙ୍କଁ ପେଣଠି ବସି ଭାବଲେ, ଦେଇପୋ ମଙ୍କଡ଼ଶିଆ ଘୁରୁକୁ ଆଣି ତ ଦେଲୁବ୍ ଦୋଇଭ, କହିବ କଣ ? ନ କହିଲେ ମାଆଁଟା ପିଦ ନାହିଁ । ଏହା ଭାବ ଅନେକ ଦେଇଲ ମାଖ ବଢ଼ଳ ନୁଆରେ ବସି କହିଲେ, ଭଅଖ ଗର୍ଣ୍ଣିକା ଖୋଲ ଛଡା, ଅଦ୍‌ବାଳକସାଜର ଶୁଣ ସେ କଥା ।

ଏ ଦେଶର ନା ମୃଜଣ୍ଡ । ଏ ଦେଶର ପୂର୍ବକାଳରେ ବୈରଞ୍ଜନ ବୋଲି ଜଣେ ରଜା ଥିଲେ । ରଜାଙ୍କ ବଡ଼ ଆଳ ଥିବାରୁ ଗୁଡ଼ାଏ ଭ ଲମନ ନ ବାଛୁ କାହା ତ ହୋଇଥିଲ । ତାଙ୍କଠାରୁ ପୂଅଝିଅକର ଶ ବ୍ଭ ଗୁଡ଼ାଳ ଡେରେବ ଜନ୍ମ ହୋଇଥିଲେ । ରଜାର ଅକଳନା ଧାନ୍ଦରବୁ । ପୂଅ-ଝିଅଗୁଡ଼ାଙ୍କ ମଣିଷ କରୁ ନରୁ କୋଠାବାଡ଼ ଭର୍ତ୍ତି ହୁଅ ଗଲାଣି । ସେଇ ଭଙ୍ଗାକୋଠା ଦେଖି ଗୁଡ଼ାଏ ମାଙ୍କଡ଼ ବଣରୁ ଆସି ସେଠାରେ ବସା କରି ରହିଛନ୍ତି । ରଜାର ପିଲାମାନେ ଖେଳ, ଘର୍ରା ସାର ଆସି ମାଙ୍କଡ଼ଙ୍କ ଗୋଠରେ ଡାକନ୍ତି । ତାଙ୍କୁ ନଡ଼ିଆ, କଦଳୀ ପିଠା ଲଡ଼ୁ ଖଆନ୍ତି । ମାଙ୍କଡ଼ଗୁଡ଼ାକ ମଣିଷଙ୍କ ଅଳା ପର ବସି ଖାଆନ୍ତି । ପିଲାଏ ଝଡ଼ୋଇ ଦେଲେ ସେଗୁଡ଼ାକ ଖରେଇ ହୁଅନ୍ତି । ନ ଚ ନାଚ ଗୀତ ଲଖ ରନ୍ଦ । ତାଙ୍କ ଭିତରୁ ଯୁଥପତ ବୁଢ଼ା ହନୁ ଟୋକି ଦେଲେ ଦେଲେ ପିଲଙ୍କ ଆଡ଼କୁ ଖରେଇ ହୋଇ ଗାଣ୍ଡି ଦେଖାଉଦଏ । ପିଲାଗୁଡ଼ାକ ହୋ-ହୋ କରି ଖୁସି ହୁଅନ୍ତି ।

ସେଇ ଭଙ୍ଗାକୋଠା ପାଖରେ ଗୋଟାଏ ବଡ଼ ଘୋଡ଼ାଶାଳ ଥାଏ । ଦିନେ ବୁଢ଼ା ରାଜବୈଦ୍ୟ ଗୋଟିଏ ଘୋଡ଼ାରେ ଚଢ଼ି ଦୂର ଦେଶକୁ ଯିବାପାଇଁ ଘୋଡ଼ାଶାଳକୁ ଯିବାରୁ ଗୋଟିଏ

ପାତ୍ତ ମାଙ୍କଡ଼ ଝିଁ ଝିଁ କରି ଦୌଡ଼ି ଆସି ବୈଦ୍ୟଙ୍କର ଚୁଟିକି ଧରି ଟାଣି ଦେଇ ଚାଲିଗଲା । ବୈଦ୍ୟ ଜଅରଲୁ ସୁଝିଲାବେଳକୁ ପାତିଟା ଦାନ୍ତ ଖୁଞ୍ଜି ଖେଳୁଥିଲା । ବୈଦ୍ୟବୁଢ଼ା କହିଲେ, ହଉ ଇଚ୍ଛାଥାଏରେ ଖାଲ, ବଖାଣ ଆସୁ ଦେଖେଇ ଦେବ ।

ଯୋଗକୁ ସେଇ ସୁଯୋଗ ଆସିଗଲା । ଘୋଡ଼ାଶାଳ ସେପାଖକୁ ଦୋଷଚବର ! ରଜାଙ୍କ ମାଳୀ ଗୋଟିଏ ମେଣ୍ଢା ପୋଷିଥାଏ । ମେଣ୍ଢାର ଦେହମଗୁଡ଼ାକ ଲୁଛାଟସ୍ତ ଲୋମେ ଲଟିଶ । ଦେଖିବାକୁ ଜଳାବାଲ୍ ଦର । ସୁନ୍ଦରଦି ଚେନ୍ଦିଆ ଧରଣର । ବେଳହୁଣ୍ଡି ଯାଇ ଘୋଷେଇଦରେ ଖଣ୍ଡି ଭାତ ଡାଲି ଚାଲୁ ଚାଲୁ କରି ଖାଇଦିଏ । ସୁଆରମାନେ ଦଣ୍ଡ ତୋଇଦା କହିଦେଲେ ବି ମେଣ୍ଢାର ଛକ ନାହିଁ । ତଥାକୁ ଛକି ନ କରି ସେମାନେ ଥୋବରା ମୁହଁ କରି ପୁଣି ପଡ଼େ । ଘୋଷେଇଦ ଲାଠ ଘୋଡ଼ାଆ ଯା ଯିଏ ପାରେ କୁଟିଦିଏ ଅସ୍ତ୍ରକର ।

ମେଣ୍ଢାଟାର ଏତେ ଲମ୍ଫ ଦେଖି ଦିନେ ମାଙ୍କଡ଼ ଗୋଠର ଯୁଥପତି ହନୁବୁଢ଼ା ମାଙ୍କଡ଼ଙ୍କୁ ପାଖଘାଏ ଡ଼କେଇ କହିଲା ଆରେ ଦେ ! ଏ ନେଥାଦରା ମେଣ୍ଢାଟା ଯେମିତି ଅଲାଜୁକିଆ କାମକରୁଛି, ଇଏ ଦିନେ ବିପଦ ଘଟେଇବ । ସେ ବିପଦରେ ଆମପାଦ ବି ଟଳିପାରେ ଖୁଲି, ଆମେ ଏଠୁ ପଳେଇ ଯିବା । ଆମେ ତ ବଣ ଜଙ୍ଗଲର ଜୀବ । ରାଜପ୍ରାସାଦରୁ ଦଣ ପିକତ ‘ଯାଏ ? ତା କଥା ଶୁଣି ପାତଗୁଡ଼ାକ ମୁହଁ ମୋଡ଼ି କହିଲେ, ବୁଢ଼ା ହେବାରୁ ତୋତେ ବାଉନାଦଶା ଧରି- ଲାଣି । ପେଟ ବନ୍ଧୁଆଗୋ ! ହଜମ ହଜନ ବୋଲି ଆମକୁ ବଣକୁ ଡାକୁଛୁ ? ତୋର ଦାନ୍ତ ନାହିଁ ଲାଗୁଛି ଭୁଆ ଆମେ ଚିହ୍ନୁନାହିଁ । ବୁଢ଼ା ଆଉଥରେ ବୁଝାଇ କହିଲା, ଆରେ ପିଲେ ! ମୋ କଥା ମାନ ପଳେଇ ଚାଲରେ, ନୋହିଲେ ଉପଦ୍ରବରେ ପଡ଼ିବ ଦିନା । ତାଙ୍କ ଭିତରୁ ଖୁଡ଼ାଏ ପାତ୍ତ ଫିଙ୍କାରି କହିଲେ ଭୁ ଭାରି ଜାଗତିଆଧ ପଣ୍ଡିତଟାଏ

ନା ? ଆସ୍ତୁ ଆସ୍ତୁ ବୁ ଗ୍ଲଲସା । ଆମର ଯିବାକୁ ମନ ନାହିଁ ।
ଏ କଥା ଶୁଣି ବୁଢ଼ା କହିଲା, ଦୁହିଁଙ୍କ ର ଗାତ ଜୁମର ଦନକାଳ
ନକଟ ହେବାରୁ ଏମା ହିତ କଥାକୁ ପ୍ରୀତ ମଣୁଚ । ଶାସ୍ତ୍ର କହନ୍ତି—

'ଗମନକାଳେ ଚକ୍ଷୁଶ୍ଚ ସୁହୃଦ ବାକ୍ୟମରୁନ୍ଧତୀଂ
ନ ଜ ଘନ୍ତ ନ ଶୃଣ୍ୱନ୍ତି ନ ବୁଦ୍ଧ୍ୟନ୍ତି ଗତାୟୁଷ ।

ବପବଳାଳ ନକଟ ହେଲେ ଦୀପ ଲିଭିବା, ଗନ୍ଧ ସୁବନ୍ଧୁର
କଥା, ଅରୁନ୍ଧତୀ ନକ୍ଷତ୍ର ଦଶେ ନାହିଁ, ଭଲ ଲାଗେ ନାହିଁ । ଆସ୍ତୁ,
ତୁମେ ନଗଲ ନାହିଁ, ମୁଁ ଯାଉଚ କହି ବୁଢ଼ା ବଣକୁ ପଳାଇ ଗଲା ।
ଟାଉଗୁଡ଼ାକ ଖଟେଇ ହୋଇ ପଡ଼ନ୍ତୁ ଡାକ କରି ଗୋଟେଇଗଲେ ।
ତା ପରେ ଦିନେ ସେ ମେଣ୍ଢାଟା ଆସି ତେଜ ଗେଷେଇ ଘରେ ପଶି
ଭାତ ଖାଉଚ ତାକୁ ଦେଖି ଜଣେ ପାଚକ ଚୁଲିରେ ଜଳନ୍ତା ନିଆଁ
ଖଣ୍ଡାଟାଏ ଧରି କଷିଦେଲା ଦଣ ପାହାର ତା ପିଠିରେ । ମେଣ୍ଢାଟା
ପଳେଇଲା ସତ, ହେଲେ ତା ଲୁମରେ ନିଆଁ ଲାଗିଲା । ସେ
ବଳରେ ମେଁ ମେଁ କରି ଦୌଡ଼ିଯାଇ ଘୋଡ଼ାଙ୍କ ପାଇଁ ଥିବା
ଶୁଖିଲା ଘାସ ଗଦାରେ ଗଡ଼ଗଡ଼ ହେବାରୁ ନିଆଁ ଲଗେଇ ଦେଲା ।
ସେ ନିଆଁ ଘାସରେ ଲାଗି ଘୋଡ଼ାଶାଳ ପୋଡ଼ିଗଲା । ସେ ନିଆଁରେ
ଘୋଡ଼ା ଅଧେ ପୋଡ଼ିଗଲେ । କେତେକ ଦରପୋଡ଼ା ଘୋଡ଼ାଙ୍କୁ
ଲୋକେ ନିଆଁ ଲିଭାଇ ବାହାରି ନେଲେ

ରଜା ସେ ଦରପୋଡ଼ା ଘୋଡ଼ାଙ୍କ ପୋଡ଼ାଘା ଭଲ କରିବାକୁ
ବୈଦ୍ୟଙ୍କୁ କହିବାରୁ ବୈଦ୍ୟ କହିଲେ, ମୋତେ ଯଦ ମାଙ୍କଡ ଚର୍ବି
ମହଣେ ଯୋଗାଡ଼ କରି ଦେବେ ତା'ହେଲେ ସେଥିରେ ମଲମ କରି
ଘୋଡ଼ାଙ୍କୁ ଭଲ କରିଦେବି । ରାଜା କହିଲେ, ଏତେ ମାଙ୍କଡ
ଚର୍ବି କିଏ ଯୋଗାଡ଼ କରିଦେବ ? ମନ୍ତ୍ରୀ କହିଲେ, ନ ଦେଲେ
ଗାଉଆ ଘୋଡ଼ାଙ୍କୁ ବଞ୍ଚେଇବା କିମିତି ? ଆମ ପୁରୁଣା ଭଙ୍ଗା
କୋଠାରେ ଜାଲ ବସାଇ ସେଠାରେ ରହୁଥିବା ମାଙ୍କଡଙ୍କୁ ମାରି

ଛୁଡ଼ାହେଲା । ଆଣି ତାକୁ ଅନେକ ମାହାର ଦଉଚ । ତା ବେକରେ ଗୋଟାଏ ବହୁମୂଲ୍ୟର ରତ୍ନହାର ଥାନ୍ତି । ତା ବିକଟମୂର୍ତ୍ତିକୁ ଦେଖିଲେ ମଣିଷ ମୂର୍ଚ୍ଛା ହୋଇ ପଡ଼ିଯିବ । ସେ ବୁଢ଼ା ମାଙ୍କଡ଼କୁ ଏପରି କରି-ବାର ଦେଖି ରାଗରେ କହିଲା, କରେ ପାପିଷ୍ଠ ! ତୁ ଆଜ ମୋର ଦାନାମାରିବା କାମ କଲୁ କାହିଁକି ? ମାଙ୍କଡ଼ କହିଲା, ମୋତେ ଶୋଷ କଲା, ମୁଁ ପାଣି ପିଇଲି । ତୋ ଦାନା ମାରିବ କାହିଁକି ? ପାଣି ପିଇବାକୁ କେଉଁଠି କଏ ମନା କରିଛି କି ? ଲୋକେ ଲକ୍ଷ ଲକ୍ଷ ଖର୍ଚ୍ଚ କରି ଜଳଛତ୍ର କରୁଛନ୍ତି । ତୁ ମୋତେ ଗାଳିଦେଉଛୁ କାହିଁକି ? ଏଟା କ'ଣ ତୋ ବାପାର ସମ୍ପତ୍ତି ? ରାକ୍ଷସ ଅସୁର କହିଲା ମୁଁ ପୂର୍ବରୁ ଏଇ ବଣରେ ବୁଲି ବୁଲି ଜୀବଜନ୍ତୁଙ୍କୁ ମାରିବାରୁ କୁବେର ଆସି ମୋତେ ଏଇ ପୋଖରୀ ଜଗିବାକୁ କହିଲେ, ଏଇ ପୋଖରୀରେ ସ୍ନାନକର । ମୁଁ ତାଙ୍କ କଥା ମାନି ଏଠି ରହିଲି ପାଣିରେ ବୁଡ଼ି ଉଠିବାରୁ ସେ କହିଲେ, ତୁମେ ପାଣିରେ ଥା । ଉପରକୁ ଆସିଲେ ତୋ ମୁଣ୍ଡ ଚୂନା ହୋଇଯିବ । ଯେଉଁ ଜୀବ ଏ ପାଣି ଛୁଇଁବ, ତାକୁ ଧରି ଖାଉଥିବୁ । ଉପରକୁ ଆସିଲେ ତୋର ନିଶ୍ଚିତ ମୃତ୍ୟୁ ଜାଣିଥା । ସେଇଦିନୁ ମୁଁ ଏହି ପୋଖରୀରେ ରହିଛି । ଯିଏ ଆସି ପାଣି ପିଉଛି, ମୁଁ ତାକୁ ଟାଣି ଖାଉଛି । ଏପରି ବୁଦ୍ଧିଆ କାର୍ଯ୍ୟ କଲୁ ଯେ, ତୋ ଲାଙ୍ଗୁଡ଼ରୁ ଟିକିଏ ବି ଧରି ହେଲା ନାହିଁ ।

ମାଙ୍କଡ଼ ଅସୁରଠାରୁ ବୁଦ୍ଧିଆ ! ସେ ଦେଖିଲା ବେଶ୍ ସୁବିଧା ପଡ଼ିଛି । ଆଜିକାଲି ଦୁଷ୍ଟଆତ୍ମା ଲକ୍ଷ୍ମୀ ଗୁଣ୍ଡା ରହିଛି । ଆମର ନାନ୍ଦ ପଣ୍ଡିତ (ମୋତେ ତାଙ୍କ ନାମ ନେବାକୁ ମନାକରାଯାଇଛି) ତାଙ୍କ ମତରେ ବାନରଙ୍କ ପରବର୍ତ୍ତୀ ସଂସ୍କରଣ ନର ) ଲକ୍ଷ୍ମୀ ନଈଚନ୍ଦ୍ର, ଏ ବେଳପୋ ଲକ୍ଷ ନ ଦେଲେ ଧ୍ୟାନ ଛାଡ଼ିବ କଏ ? ସ୍ୱୀ ଭାବି କହିଲା, ତୁ ଯଦି ମୋତେ ରତ୍ନହାରଟି ଦେବୁ ତ ବଞ୍ଚିବୁ । ନୋହିଲେ

ଶେଷକୁ ହାରଟାକୁ ସରକାରରେ ଜମାଦେବ ଯାହା । ତାଠୁ ଭଲ ମାଙ୍କଡ଼ଟାକୁ ନ ମାରି ଘଟଣା ପଚାରି ବୁଝ । ଏ କଥାରେ ଯୋଉ ଟୋକାଏ ଠେଙ୍ଗା ଉଠାଇଥିଲେ । କହିଲେ, ସତରେ ତ ଭାଇ । ତୋଳ ଯାଉ ଖାଇବ, କଳୁଡ଼ି ଖାଇବ ହାଡ଼ । ବୁଢା ସତ କହୁଛି । ପଚାରି ଦିଅ । ସେଇଠୁ ଜଣେ ମୁଖିଆ ଯାଇ ମାଙ୍କଡ଼କୁ ପଚାରିଲା ଆରେ ହ ଶ୍ରୀପତି ! ତୁ ଏତେଦିନ କୁଆଡ଼େ ଥିଲୁ । ରାଜା ତ ତୋ ଙ୍କଣ ମରାଇଦେଲେ ତୁ ରତ୍ନହାରଟିଏ କୁଆଡ଼ୁ ଆଣିଲୁ କାହାକୁ ଦେବୁ ?

ବୁଢ଼ା ଟିକଏ ତାଳୁ ଗିଳି ହସି କହିଲା, ଯାହାର କାଳ ପୁରିଲା ସିଏ ମଲା, ମୋର ସେଥିରେ ଯାଏ ଆସେ କ’ଣ ? ତାଙ୍କଡ଼ା ରାଜା ସରକାରତ ‘ମର୍କଟମାରେଣି ଫନ୍ଦ’ କରି ମାଙ୍କଡ଼ ମାରି ଲଙ୍ଗୁଡ଼ ନଉଛନ୍ତି । ଏତ ନଦେଲେ ନେଉଛନ୍ତି ଚର୍ବି । କରିବ କ’ଣ ଆଜ ଏ ରତ୍ନମାଳ ପାଇ ତୁମେ ମୋତେ ମାରିବାକୁ ବସିଛ କାହିଁକି ! ତୁମ ଭିତରୁ ଯାହାର ହାରପାଇଁ ଲୋଭ ହେଉଛି ମୋ ସାଙ୍ଗରେ ଚାଲନା, ଏମିତିକିଆ ହାର ଗୋଟିଏ କରି ପ୍ରତ୍ୟେକ ନେଇଆସିବ । ଲୋକେ ପଚାରିଲେ, କୋଉଠିକି ଗଲେ ଏ ହାର ପାଇବା ? ବୁଢ଼ାମାଙ୍କଡ଼ କହିଲା; କାଭାକୁମ ପାହାଡ଼ ମଝିରେ ପୋଖରୀଟିଏ ଅଛି । ସେଠାକୁ ଢଷ୍ଟକରି ଯାଇ ଯିଏ ସେଇ ପୋଖରୀରେ ବୁଡ଼ି ସ୍ନାନକରି ବାହାରିବ, ସିଏ ଏମିତି ଗୋଟିଏ ରତ୍ନମାଳ ନାଇ ଆସିବ । ମୁଁ ବୁଲିବୁଲି କରି ଦାହ ଜଳିବାରୁ ସେ ପୋଖରୀରେ ସ୍ନାନ କରିବାକୁ ଯିବାରୁ କୁବେର ଲୋକ ମୋ ବେକରେ ଏ ହାରଟି ପିନ୍ଧାଇ ଦେଇ କହିଲେ ଏଟା କୁବେରଙ୍କ ସରୋବର । ଯେଉଁମାନେ କଷ୍ଟ କରି ଆସି ଏଥିରେ ସ୍ନାନକରିବେ କୁବେରଙ୍କ ହୁକୁମ ଅନୁସାରେ ମୁଁ ତାଙ୍କୁ ଗୋଟିଏ ରତ୍ନହାର ଦେଏ । ଏଇଟା [illegible] ଏଠାର କଥା । ଏ କଥାଶୁଣି ସେ ରାଜ[illegible]ରେ

ଯେତେ ଲୋକ ଥିଲେ ସମସ୍ତେ ହାର ଲୋଭରେ କହିଲେ, ଆମେ ଯିବୁ । ଅନେକ ବୁଢ଼ାକୁ ବାଉଳଣ, ଅଳ୍ପ ଦୋଷ ଦେଇ ହାତ କଲେ । ବୁଢ଼ା ଜବାବ ଦେଲା, ସଙ୍ଗରେ ନେଇ ଯୋଖଣା ଦେଖେଇ ଦେବ ।

ନାନାଦ ବଉଦ ଯିନା କୋଣକୁ ! ବୁଣ୍ଡ ଚାଉଦ ତ ହଜାର କୋଣକୁ ବହୁଛଯାଏ । ତହିଁ ଆରଦନକୁ ହାର ଲୋଭରେ ରାଜପୁରର ତଳଦ ଘନ, ରାଜ୍ୟରୁ କେତେ ଘର ଲୋକ ଚୂଡ଼ାଗୁଞ୍ଜଳ ବାନ୍ଧ ବାହାରିବାରୁ ଦେଖାଯାକ ତେହଳ ଅଦ୍ଭୁତଲା । ରାଜା ହାଲ କ'ଣ ପଚାରିବାରୁ ଚଉକିଆ ନାମ 'ମାଙ୍କଡ଼ ଯୋଷଣା' ଜଣାଇ ଦେଲେ । ରାଜା ଲୋକ ପଠେଇ ମାଙ୍କଡ଼ ବୁଢ଼ାକୁ ଡକେଇ ନେଲେ । ବୁଢ଼ା ଅଙ୍ଗଦ ପଣ ଲାଞ୍ଜମୋଡ଼ ବସି କହିଲା, ହଜୁର ! କାଗଜର ପାହାଡ଼ରେ କୁବେରର ଯୋଖଣା ଅଛି । ସେଠାକୁ କଷ୍ଟ କରି ଯାଇ ଯିଏ ଡାଗୋଇବ ତାକୁ ଏମିତି ରତ୍ନମାଳଟିଏ କୁବେର ଲୋକ ଦେଉଛନ୍ତି । ମୁଁ ଅଜାଣତରେ ଯାଇ ଗାଧୋଇ ପଡ଼ିବାରୁ ମୋତେ ଏ ହାରଟି ଦେଇଛନ୍ତି । ମୋ ଠାରୁ ଏ ଖବର ପାଇ ଯାଇ ଲକ୍ଷ ଲକ୍ଷ ଲୋକ ଏମିତି ହାର ନେଇ ଆସିଲେଣି । ଏ ବଉଦ୍ଧ-ଗୁଡ଼ାକ ଲୋଭ କରୁଛନ୍ତି ଯେତେବେଳେ, ସୁଲଲ୍ଲ ନେଇ ଦେଖେଇ ଦେବ । ଯିଏ କଷ୍ଟ କରିବ, କୃଷ୍ଣ ପାଇବ । ମୋର ଖାଲି ଟିକଏ ବାଟ ବତେଇଦେବା କଥା । ଦେବା ନା ନେବ ? ଏକଥା ଶୁଣି ରାଜା ଟିକଏ ଯାଇ କହିଲେ, ଯଦି ସେଠାକୁ ଗଲେ ରତ୍ନହାର ମିଳୁଚ, ତାହେଲେ ଆମକୁ ସେଠାକୁ ନେଇ ଚାଲ । ବୁଢ଼ା ଦେଖିଲା ତା ବଦେଇ ଲାଗୁ ହୋଇଛ । ତେଣୁ ସବ କହିଲା, ଖାଲି ତଳେ ହବ ନାହିଁ ଆଜ୍ଞା । ପାଣିରେ ବୁଡ଼ିବାକୁ ହବ । ପାଣିରେ ନ ବୁଡ଼ ମୁକ୍ତା ପାଇବ କଏ ? ରାଜା କହିଲେ, ହଉ ମୁଁ ବୁଡ଼ିବି । ମାଙ୍କଡ଼ ଲାଗୁଥାଏ, ତୁ ବୁଢ଼ବୁ କ'ଣ ତୋ ବଂଶ ବୁଡ଼ିବେ ।' ବୁଢ଼ା କହିଲା

ପ୍ରାମୁ । ଯଦ ଜଟଳ ବଢେ କରିବେକ ମୁଁ ସଳଖବାଟରେ ନେଇ ଦଣ ଦନରେ ପହଞ୍ଚାଇ ଦେବ । ରଜା କହିଲେ, ଗଲେ ଠିକ୍ ପାଇବ । ମାଙ୍କଡ଼ କହିଲା, କ କଥା ଇଏ ! ମୁଁ ବହ ପଣ୍ଡିତ ବୁଡ଼ ପାଇଲ । ହଜ ର ଚ ମଣିଷ, ପୁଣି ନରରୁ ନରେନ୍ଦ୍ର । ବେଶି ଧାଇବାର ଆଶା ବୁଢ଼ା କଥାରେ ରଜା ସଜବାଜ ହେବାକୁ ବରଦ ଦେଲେ । ଶାସ୍ତ୍ରରେ କହିଛି—

'ଲୋଭାତ୍ କ୍ରୋଧଃ ପ୍ରଭବତି ଲୋଭାତ୍ ମୋହଶ୍ଚ ଯାୟତେ'

ଲୋଭାତ୍ କାମଶ୍ଚ ନାମଶ୍ଚ ଲୋଭ ପାପସ୍ୟ କାରଣଂ ।'

ଲୋଭରୁ କ୍ରୋଧ ବଢ଼େ, ମୋହବଢ଼େ, କାର୍ଯ୍ୟ ନାଶ ହୁଏ, ଲୋଭହିଁ ପାପର କାରଣ । ସେହି ଲୋଭରେ ରଜା ଭୂଲ ଯେତେ-ବେଳେ ବାହାରିଲେ, ପୁଅ ଭାର୍ଯ୍ୟା ସବୁ ପ୍ରଜା ବ ସାଙ୍ଗରେ ଗଲେ ।

ଲୋଭୀଦଳଙ୍କୁ ନେଇ ବୁଢ଼ାମାଙ୍କଡ଼ ଆଗେ ଆଗେ ଯାଇ ସେହି ପୋଖରୀ ପାଖରେ ପହଞ୍ଚିଲ । ବାଉଳୋଭୀ ଲୋକମାନେ ପୋଖରୀ ସ୍ବରୂପଟେ ଘେରିଗଲେ ରଜାଙ୍କୁ ନେଇ ବୁଢ଼ାମାଙ୍କଡ଼ ଗୋଟିଏ ଗଛମୂଳରେ ଛିଡ଼ାକରେଇ କହିଲ ମଣିମା ଏଇଠି ଛିଡ଼ା ହୁଅନ୍ତୁ । ଏ ଲୋକଗୁଡ଼ାକ ଆଗେ ପାଣିରେ ବୁଡ ରହିବାର ପିଛ ଆସନ୍ତୁ ତା'ପରେ ହଜୁର ଯିବେ । ତା କଥାରେ ରଜା ରାଜ ହେଲେ । ଏଣେ—

ଯାହାର ପୂରିଯାଏ କାଳ
କାଳ ଓଟାରି ନଏ ବାଳ ।

କଥାପରି ଲୋକମାନେ ଯାଇ ପୋଖରୀଟାକୁ ଘେରିଗଲାରୁ ମାଙ୍କଡ଼ ବୃକ୍ଷଶାଖରେ ବସି ଜଣେଇଦେଲ, ସମସ୍ତେ ଚତ୍ପାରୁ ଛୁଦ ମୁଁ ଯେତେବେଳେ ହରିବୋଲ କହିବ ସମସ୍ତେ ଏକାବେଳେ ହରିବୋଲ ଦେଇ ପାଣିକ ଡେଇଁ ପଡ଼ିବ । ବୁଢ଼ାମାଙ୍କଡ଼ର ଏପରି ଘୋଷଣା ଶୁଣି ଦୌହଦା ପ୍ରଜାପାଗୀ ଗୋଷ୍ଠୀପଟି ସମସ୍ତେ ହର-

ବୋଲକୁ ଟାକ ଉଛୁଁଛନ୍ତି । ମାଇନ୍‌ମ ସବୁ ଲୁଗାକାନ୍ଧ କମରରେ ଭିଡ଼ି ଛକ ଛକ ହେଉଥାନ୍ତି । ଏଇବେଳେ ମାଙ୍କଡ଼ ଗଛ ଉପରକୁ ଉଠି ଲଗେଇଦେଲା ଧରବୋଲ । ଯେମିତ ତା ମୁହଁରୁ ହଣବୋଲ ବାହାରିଛି ଆଉ ସମ୍ଭାଳେ କଏ ? ସବୁ ଲୋକ ଏକାବେଳେ ପାଣିକୁ ଡେଇଁପଡ଼ି ବୁଡ଼ିଗଲେ । ଖାଲି ଗଜା ଚଳେ ମାଙ୍କଡ ଗଛରେ ।

ଘଣ୍ଟାଏବାଦେ ମାଙ୍କଡ଼ ଓହ୍ଲାଇ ଆସିଲା ତଳକୁ । ତାକୁ ଦେଖି ରଜା ପଚାରିଲେ, ଆରେ ଏ ପାଏ ଏ ଲୋକମାନେ ଉଠୁନାହାନ୍ତି କାହିଁକି ? ମାଙ୍କଡ଼ କହିଲା, ତାର ପିଛାକୁ ଡେଇଁଦେଇଛନ୍ତି ବୋଧେ । ହେଲେ; ଯେତେବେଳକୁ ରାଘବ ଅସୁର ସମସ୍ତଙ୍କୁ ଗର୍ଭସ୍ଥ କରିଦେଲାଣି । ପୁଣି ଦୁ'ଘଣ୍ଟା ଗିବାରୁ ରଜା ଆବାକାବା ହୋଇ ପଚାରିଲେ, ଆରେ ମୂର୍ଖପଣ ! ଆମ ଲୋକସବୁ ଏତେବେଳଯାଏ କୁଆଡ଼େ ଗଲେ ? ବୁଢ଼ା ମାଙ୍କଡ଼ ଗଛ ଡାଳରେ ବସି କହିଲା, ଆଜ୍ଞା ସେମାନେ ସେପୁରକୁ ଚାଲିଗଲେଣି । ଏଭଳି ରତ୍ନହାରପାଇଁ କୁବେର ପୁରରୁ କେହି କଣ ଭୂମଧର ଦାନ୍ତକୁ ରଜା ପାଖକୁ ଲେଉଟି ଆସେ ?

ତା କଥା ଶୁଣି ରଜା କହିଲେ, ମୋତେ ନାରଙ୍ଗ କହୁ ଏପରି ବଂଶବୁଡ଼ା କାର୍ଯ୍ୟ କୁ କାହିଁକି କରୁଛୁରେ ବୁଢ଼ାମାଙ୍କଡ଼ ଟିକଏ ବାନ୍ଧ ଗିଳିଥିଲ୍ଲ କହିଲା ମୋ ବଂଶମାରି ତୁମେ ଯେତେବେଳେ ତର୍ଚ୍ଚ କାଢ଼ୁଥିଲ ସେତେବେଳେ ମନଟା ବଡ଼ ଖୁସି ହଉଥିଲା । ଅବକା ମନଟା ଦୁଃଖ ହଉନାହିଁ ? ମୋ ବଂଶ ମାରିଥିବା ଯୋଗୁ ଆଜ ତୋ ସବଂଶ ପ୍ରଜାଙ୍କୁ ମୋ ବଛୁର ଅହାର କରେଇଦେଇଛି । ଏହାକହି ସେ ଡାକିଲା ରାଘବ ବନ୍ଧୁ ! ଏମିତ ଡାକିବାରୁ ପୋଖରୀ ଭିତରୁ ଦୋଡ଼ ଗର୍ଜନକରି ରାଘବ ଅସୁର ଯେମିତ ମୁଣ୍ଡ ଉଠାଇଛି ଆଉ ରଜାଙ୍କୁ ସମ୍ଭାଳେ କଏ ? ସେ ଅତରସ୍ଥ ଦୋପାଳେ ତାକ ଏକାବେଳେ ଲୁଗାପଟା ଖସିପଡ଼; ମୁହଁମାଡ଼ି ପଡ଼ିଗଲେ । ତା'ପରେ

ବୁଢ଼ା ଓହ୍ଲାଇଆସି ସୁନାଏ ଡାଳ ଧରି ବସିବାରୁ ରଜା ଚେତା ପାଇ ଉଠି ଯୋଉବାଟେ ଆସିଥିଲେ ସେଇବାଟେ ଆଗେଇଲେ ।

ରଜା ଫିକାରୁ ବୁଢ଼ାମାନଙ୍କର ଖବର ଅସୁରକୁ କହିଲ, ବନ୍ଧୁ ଏଥର ମୋ ପାଉଣା ଦେଣ୍ଡାକ ଦେବଟି । ମୁଁ ମୋର ବାଟ ଧରେ । ଖବର ଅସୁର ଖୁସି ହୋଇ କୁମ୍ଭୀର ବାଉ ଦେଖନ୍ତି ଯେତେ ସୁନା ଗହଣା ପାଇଥିଲା ସବୁ ଉପରକୁ ଫୋପାଡ଼ିଲା । ବୁଢ଼ାମାନଙ୍କର ସେଗୁଡ଼ିକ ବୋହିଆଣି ଗୋଟିଏ ପାହାଡ଼ ଗୁମ୍ଫାରେ ରଖି ଆସି ଦେଖିଲାବେଳକୁ ରଜା ମନ ଦୁଃଖରେ ଆସୁ ଆସୁ ବାଟରେ ପଡ଼ ମରିଛନ୍ତି । ତାଙ୍କୁ ଦେଖି ମାଙ୍କଡ଼ ମନରେ ଦୁଃଖ ହେବାରୁ ସେ ରଜାଙ୍କୁ ସେଇଠି ପୋତି ତାଙ୍କର ସମାଧି ଉପରେ ଅମୁନ୍ଦ । ଦେଉଳଟିଏ ତୋଳାଇଛି । ଆଜି ସେ ଜାଗାରେ ଯେଉଁ ପିତ୍ତଳ ଖମ୍ବ ଉପରେ ବାନର ଗଳାରେ ରତ୍ନହାର ଲମ୍ବାଇଥିବା ମୂର୍ତ୍ତି ଦେଖିଲୁ ସେଇଟାକୁ ସେ ଗଢ଼ାଇ ରଖିଯାଇଛି ତା'ର ସ୍ମୃତି ରକ୍ଷା ପାଇଁ । ବୁଝିଲୁଟିରେ ଅବୋଲକରା ! ଏ ଗପଟି ମୁଁ ଅଜାଙ୍କ ମୁହଁରୁ ଶୁଣିଥିଲି । ଆଜ ଆଖିରେ ଦେଖି ବିଶ୍ୱାସ କରୁଛି । ଏହାକହି ଗୋସେଇଁ ଚୁଡ଼ା ଚକଟିବାକୁ ଆରମ୍ଭ କଲେ ।

ରତ୍ନମାଳ କଥାଗୋଟି ଏଠି ହେଲା ଶେଷ ।
କହେ ଅବୁଝ ପାଠକେ ନଧରିବ ଦୋଷ ।

## ଅବୁଝାମଣା ରଜା କଥା

ରତ୍ନମାଳ କଥାଶୁଣି ଅବୋଲକରା ତଣ୍ଟିଆରଡ଼ନ ଗଣ୍ଡିଲ ହୋକସ୍ ଧରି ଆଗେଇଲା । ଗୋସେଇଁ ଗୋଟିଏ ଗୋଟିଏ ଯାଉଆନ୍ତି ଏମିତି କରି କେତେ ବାଟ ଗିବାପରେ ଗୋଟିଏ ଧର୍ମଶାଳା ଦେଖି ଗୋସେଇଁ କହିଲେ ଅବୋଲକରା ! ଏଇ ଧର୍ମଶାଳାକୁ ଚାଲରେ; ଆଜ ରାତିଟା ଏଇଠି ରହି କାଲିକ ଯିବା । ଏହା ଶୁଣି

ଅବୋଲକର ସେ ଧର୍ମଶାଳାକୁ ଯାଇ ବୋକସ୍ତ ରଖି ବସପଡ଼ିଲା । ଗୋସେଇଁ କହିଲେ କହିଲୁ କାହିଁକରେ ? ପାଖରେ କୋଉଠି ହାଟ ବଜାର ଅଛି ଦେଖି ଗୁଡ଼ାକ ଡାଲି, କାଠ କଣି ଆଣେ । ରାନ୍ଧି ଖାଇଲେ ବେଶ ହେବ । ଏହା କହି ଗୋସେଇଁ ଟଙ୍କାଟିଏ ଦେବାରୁ ଅବୋଲକର ବାହାରିଲା । ଗୋସେଇଁ ଗାଧୋଇ ଆସି ସନ୍ଧ୍ୟା ପୂଜାରେ ବସିଛନ୍ତି, ଏଇବେଳେ ଅବୋଲକର ଅଧବାଟରୁ ହସି ହସି ବାହେଦମ୍ ହୋଇ ଆସୁଛି । ତାକୁ ଦେଖି ଗୋସେଇଁ ମଧ୍ୟ ହସି ହସି ପଚାରିଲେ, କରେ ! ଆଜ ବଡ଼ ଖୁସି ହେଉଛୁ ଦେଖୁଛି କିଏ, କ'ଣ ଦେଖିଛ କରେ ? ଅବୋଲକର ସଉଦା ରଖି କହିଲା, ଗୋସେଇଁ ! ବଜାରକୁ ଆସିବାବେଳେ ଦେଖିଲି ଗୋଟିଏ ସମାଧି ଉପରେ ଶୂଳଟିଏ ପୋତାହୋଇ ସେଥିରେ ଫୁଲଚନ୍ଦନ ଲଗାହୋଇଛି । ଏହି ଶୂଳପୂଜାର କାରଣ କ'ଣ ପଚାରିବାରୁ ଗୋଟିଏ ଲୋକ କହିଲା, ଏଟା ଅବୁଝା ରଜାର ଗାଣ୍ଡି ଫୋଡ଼ ଶୂଳ । ଆଉ କିଛି ସେମାନେ କହିପାରିଲେ ନାହିଁ । ସେ ଶୂଳ ପୂଜାର କାରଣଟି କହିଲ ଶୁଣେ ଗୋସେଇଁ ? ଏହା ଶୁଣି ଗୋସେଇଁ କହିଲେ କାଁଟା ତ ଏପରି ଶୁଣିଲୁଣି । ଗପ ଶୁଣିଲେ ସେ ହସି ହସି ପେଟ ଫୁଲେଇ ପଡ଼ିବୁରେ । ଅବୋଲକର କହିଲା ହଉପଛେ ଆଗେ ଗପଟି କହନ୍ତି ଗୋସେଇଁ । ଗୋସେଇଁ ରୋଷେଇ ଯୋଗାଡ଼ କରୁ କରୁ କହିଲେ—ପୂର୍ବକାଳରେ ଏ ଦେଶରେ ଅବୁଝା ବନ୍ଧୁ ହୋଇ ଜଣେ ରଜା ଥିଲେ । ତାଙ୍କ ବୁଦ୍ଧିରେ ଅଗମୂଳ କିଛି ନଥାଏ । ସେଇଥିପାଇଁ କେହି କେହି ତାଙ୍କୁ ଅଗାଣ୍ଡିଆ ରଜାବୋଲି କହନ୍ତି । ତାଙ୍କର ଗୋଲବୁଦ୍ଧି ମନ୍ତ୍ରୀ ଥା'ନ୍ତି । ତାଙ୍କ ମୁହଁରେ ସବୁବେଳେ ଗୋଟାଏ ପାନବଣ୍ଟା ପୂରେଇ ସେ ବସିଥାନ୍ତି ପାନବଣ୍ଟା ପୂରେଇବା ଅର୍ଥ ଦାନ୍ତି ଖୋଲି ରହିଲେ ଯଦି ତାଙ୍କର ଗୋଲବୁଦ୍ଧି ଗୁଡ଼ାକ ବାହାରି ଯାଏ, ଲୋକେ ପଢ଼ିଲେ ପାଇବେ

କାହିଁ ? ସେଥିପାଇଁ ତାଙ୍କୁ କେତେକ ଲୋକ ପାଳବଣ୍ଡା ମନ୍ତ୍ରୀ ବୋଲି ଡାକନ୍ତି । ରଜାଙ୍କର କିଛି ଦରକାର ହେଲେ ମନ୍ତ୍ରୀମୁଣ୍ଡରୁ ପାଳବଣ୍ଡା ଖୋଲି ସେତିକି ଦରକାର ପେନ୍ସିଲ୍ ବଢ଼ି କାଢ଼ି ପୁଣି ପାଟିରେ ପାଳବଣ୍ଡା ପୂରାଇ ଦିଅନ୍ତି । ଏମିତି କରି ଅବୁଝାବନ୍ଧ ରଜାଙ୍କୁ ପାଳବଣ୍ଡା ମନ୍ତ୍ରୀଙ୍କମେଳେ ସୁନାକୁ ସୋହାଗୀ ହେଉଥାଏ ।

ଦିନେ ରାଜା ମନ୍ତ୍ରୀଙ୍କୁ କହିଲେ, ମନ୍ତ୍ରୀନ୍ ! ଶାସ୍ତ୍ର କଥାନୁସାରେ ଆମ୍ଭେ ରଜା ନରବିଷ୍ଣୁ । ତେଣୁ ବିଷ୍ଣୁଙ୍କୁ ଯୋଗ ଭୋଗ ଦେଇ ଲୋକେ ପୂଜୁଛନ୍ତି ଯେପରି, ଆମକୁ ମଧ୍ୟ ଈଶ୍ୱର ଦେବ ମାନୁଛନ୍ତି ହେଲେ ଦେବତାବିଷ୍ଣୁ ତ ନୂଆ ନୂଆ ବହୁତ କିଛି ସୃଷ୍ଟି କରି ପାରୁଚନ୍ତି । ଅମେ କ'ଣ ନୂଆ କଲେ ? ଆମକୁ କିଛି ନୂଆ ସୃଷ୍ଟି କରିବାକୁ ହେବ । ମନ୍ତ୍ରୀ ପାଟିରୁ ପାଳବଣ୍ଡା ଖୋଲି କହିଲେ ତାହା ନ କଲେ ପ୍ରଜାଏ ମାନିବେ କାହିଁକି ? ରଜା ପଚାରିଲେ ବିଷ୍ଣୁଙ୍କ ସର୍ଜନାରୁ ବଳି ନୂଆ କୋଉଟାଏ ବିଧାନ କିଛି ମୁଣ୍ଡରେ ବଢ଼େଇଦିଅ । ମନ୍ତ୍ରୀ ଅନେଇ ଭାବିଚାଲି କହିଲେ ମହିମା ! ଶାସ୍ତ୍ର କହୁଛି ଯିଏ ନିଜେ କିଛି କୋଉଟିଏ ନୂଆ ସୃଷ୍ଟି କରି ଜନସମାଜକୁ ଦେଇପାରିବ, ସେହି ତା'ର ଅମର କୀର୍ତ୍ତି । ସେହି ପରିବର୍ତ୍ତିମା କାର୍ଯ୍ୟରେ ତା'ର ତା କୂଳର ଜନ୍ମିତ ହୁଏ, ଯଥା—

'ପରିବର୍ତ୍ତିନୀ ସଂସାରେ ମୃତଃ କୋ ବା ନ ଜାୟତେ
ସ ଜାତୋ ଯେନ ଜାତେନ ଯାତି ବଂଶଃ ସମୁନ୍ନତିଃ ।

ତେଣୁ କିଛି ଗୋଟାଏ ପରିବର୍ତ୍ତନ ଆଣିବାକୁ ହେବ । ଯୁକ୍ତଭାବଂ ମୁଁ ଭାବୁଛି, ବିଷ୍ଣୁ ସୃଷ୍ଟି କରିଛନ୍ତି ଦିନରେ ସୂର୍ଯ୍ୟଆଲୁଅ ଦେଲେ । ଲୋକମାନେ ଖଟିବା ପାଇଁ କାର୍ଯ୍ୟକରି ଚଳୁଚନ୍ତି । ଆମେ ସେ ବିଧିର ଓଲଟା ବିଧାନ କରିବା । ମୋ ମତରେ ଆମ ରାଜ୍ୟର ପ୍ରଜାଏ ଦିନରେ ଖାଇପିଇ କବାଟ କିଳି ଶୁଅନ୍ତୁ । ରାତିହେଲେ

ଦୀପ ଆଲୁଅ ଜାଳି ସୁଖବାସ ଇତ୍ୟାଦି କାର୍ଯ୍ୟ କରନ୍ତୁ । ମନ୍ତ୍ରୀର ଏ ବୁଦ୍ଧିଆ କଥାଟା ରଜାଙ୍କ ମନକୁ ବେଶ ମାନିଲା ।

ତହିଁ ଆରଦିନ ନାଗରାବାଲା ନାଗରା ଦେଇ ଘୋଷଣା କଲା, ଶୁଣ ପ୍ରଜାମାନେ ! ରଜା ଘୋଷଣା କରୁଛନ୍ତି, କାଲିଠାରୁ ସମସ୍ତେ ଖାଇପିଇ ଦିନରେ ମଶିଣା କରି ଜବାଇ ଜାଳି ଶୋଇବା । ରାତି-ହେଲେ ଆଲୁଅ ଜାଳି ପଢ଼ାଶୁଣା ପୃଷବାଣିଜ୍ୟ କାର୍ଯ୍ୟ କରିବ । ଦିନରେ ଚଉକିଆ ବନ୍ଧୁକ ଧରି ଘୂରିଆଣ୍ଡେ ପହରା ଦେବ । ରଜାର ଏକଥା ଘୋଷଣାକରାଇବା ଶୁଣି ପ୍ରଜାଏ କହିଲେ, ଏଇଟାତ ବଡ଼ ଅକଲଆଉର ପକାଇଲେ । ରାତିଟାରେ ମଣିଷ ଘା'ବାଳୁଙ୍ଗା କରିବ କେମିତି ? କେତେକ ବୁଢ଼ୋଲୋକ ଦେଖିଲେ ଅବୁଝ ରଜାକୁ ପାଳିବଣ୍ଡା ମନ୍ତ୍ରୀ ମୂଳକରେ ଘରକରିଛୁ ଯେତେବେଳେ, ଯାହା କହିବ ମାନିବାକୁ ହେବ । ପଣ୍ଡିତ କହିଲେ ଏ ରାଜ୍ୟରୁ ପଳାଇବା ଭଲ !

ମଣ୍ଡୂକା ଯତ୍ର ବକ୍ତାରଃ ଜାନଃ ଯତ୍ର ସଭାସଦଃ
ବକା ଯତ୍ର ରାଜନ୍ତେ ରାଜ ହଂସସ୍ୟ କାକଃ ।'

ରଜା ଯେଉଁ ଅବଧି କହୁଚ, ପ୍ରଜାଏ ତା ବିରୁଦ୍ଧରେ ନ ଯିବି ମାନୁଛନ୍ତି ସେଠାରେ । ଅର୍ଥାତ୍ ଯେଉଁଠି ବେଙ୍ଗ ବକ୍ତା, ପ୍ରଜା ବକ, କାକ ସଭାସଦସ୍ୟ, ସେଠି ରାଜହଂସ କି କଥା କହିବ ? କେତେକ କହିଲେ ନାଇଁ, ଏକଥା କ'ଣ ଶରଧା ରହିବନା ? କଥାରେ ଅଛି, ବେଙ୍ଗ କହେ ବେଙ୍ଗୁଲି ଲୋ ଦୁଇଅ ମଣି ଖଣ୍ଡେ ଆଣ । ଦେଖାଯାଉ କେଉଁପାଣି କୁଆଡ଼େ ଯାଉଛି । ଯେମିତି କହି ଦିନରେ ଶୋଇ ରାତିରେ କାର୍ଯ୍ୟକରି ଚାଲିଲେ ।

ଦିନେ ରଜା କହିଲେ ମନ୍ତ୍ରୀ ! ଆମର ଗୋଟିଏ ବାହାରେ କଷଣ କରିବା ଲୋଡ଼ା । ପ୍ରଜାମାନେ ରାତିରେ କାର୍ଯ୍ୟ କରିବାକୁ ବାହାରିପିବାରୁ ମାଇପେଗୁଡ଼ାକ ବ୍ୟବହାର, ଅବସ୍ଥାର କରୁଛନ୍ତି କି କ'ଣ ସେ'ଟା ଜାଣିବାକୁ ହେବ । ଏ ପାଇଁ ଗୋଟାଏ ଜାଗା ଠିକ୍

ରେ । ମନ୍ତ୍ରୀ ପାଳଦ୍ୱାରା ନ ଖୋଲି ମୂଣ୍ଡ ହୁଙ୍କାରଦେଲେ । ଚନ୍ଦ୍ର-ମୋହନ ମାମି କହନ୍ତିଲ ଗାଥାଟି ଠିକ୍ କରନ୍ତ । ମାଇପିଙ୍କ ଉପର ଅନେକ କବି ବର୍ଣ୍ଣାକୁ ଦ୍ୱଗ୍ରେ ତାଙ୍କ ଦୃଷ୍ଟ କରନ୍ତି । ରଜା ପଚାରିଲେ—ବୃନ୍ଦାବନପର ମୁକୁଳଦ୍ଦଳନ, ଭଙ୍ଗ ଢଙ୍ଗ, ରୂପ, ଗୁଣ ତା'ର ଅଛି ନା ? କବି କହିଲେ, ଯୋଗେ ବର୍ଣ୍ଣନା ବାଦଶାଇ ପାରିବା ଭଳି ଏବୁ ଅଛି ତାର—

"ମଗୁଣ ଦେହ ହିଁ-ବୋଣ, ତାସ କନ ବର୍ଣ୍ଣ ନାସ
ଅମିଶା ଚନ୍ଦ୍ର ଯା ମୁଖ କସଲସତେ ଯା ଯୋଷ ।
କଟେନ କଳା ବାଣ, ଅଷ୍ଟ ମାଲ୍ୟର ସମାନ
ତା' କଟି ମାଠିଆ ଜାଣ, ତନୁ ଧନୁ ଆନମନା
ହାତ ଦେଖି ଯୋଗୀଜନ ଧରିବାକୁ ସଦାମନ
ନାସ୍ତି ବର୍ଣ୍ଣ ହେ ସଖେ, ଆମ୍ଭର ତହିଁଇବ ଦୁଖ ।"

ରଜା କହିଲେ ଏହା ଗଦ୍ୟସୂଚ ପଦ୍ୟବୁଝିବାକୁ ମୁଣ୍ଡ ବୁଲୋଉ ନାହିଁ । ମୁହଁ ହକ କହାତେ ବୁଝି । ମନ୍ତ୍ରୀ ବୁଝାଇଲେ, ତା ନାଁ ଭରୁଣ ଦେହାନ୍ତ (ହଁ) ଟିକ୍ ଗୋରା ହୋଇ ତା'ର ବର୍ଣ୍ଣସ୍ୱବର୍ଣ୍ଣ 'ନ' ହବା ହେତୁ ତା'ର ଦାମ 'ନାସ' ଏହା ଅର୍ଥ ହୁଏ । ତା'ର ଯେଉଁ ଦୁଇସ୍ୟ ଲମ ଶରୀରେ ଅଧ ଲକ ତ କଳା (କଳା)ତା'ର । ବର୍ଣ୍ଣ 'କ' ଅଟେ ଜନ୍ମ (କଳରେ କହି ତଙ୍କ ନାହିଁ) ଜଙ୍ଗଲ । ଆଗର ଦୃଷ୍ଟି ମାର୍ଜିତ (ହଲଦି) ଦୃଷ୍ଟିରୁ ବେଶ୍ ସୁନ୍ଦର । ଅମିଶା ହୋଇଲେ ମିଶି ନହେ (ତେଣୁବେ ବାଳକ 'ମିଶିଛୁ' ଏ ମୁଖଚନ୍ଦ ଅମିଶା (ଅମିଶା ଅର୍ଥ ଅମାବାସ୍ୟା ଅନ୍ଧକାର ଚନ୍ଦ୍ର ନଥାଏ) ତା ମୁଖ ସୁନ୍ଦରୀମାନଙ୍କୁ ଦେଖି କଣ୍ଟଲସଖା ତାର ଚାହାଣାରେ (କସନ୍ତ ଦାଗ ଅଛି) । ତା କଟି (କମର 'ମା' ଲକ୍ଷ୍ମୀଙ୍କ ଠିଆହେବା ଭଙ୍ଗିକୁ ଜଣେ । (ମାଠିଆ ପର ଗୋଲ) ଯେଣୁ ଅନେକତ ହେଉ ଟିଠି ପାଖ ଧନୁପର ବାଙ୍କିଛି । କ୍ରୁରତଶାୟ ଦେଖି ଯୋଗୀମାନେ ଧରନ୍ତାକୁ ! ଲକ୍ଷପର

ହେବାକୁ ଲୁମ୍ବା କଟଚା (ଇଚ୍ଛାରେ) ମନ ବଳାନ୍ତ । 'ବର' ଶ୍ରେଷ୍ଠ ପୁରୁଷମାନେ ସଙ୍ଗ (ଧର୍ମପତ୍ନୀ) କରିନେବାକୁ ଲକ୍ଷ୍ୟ (ଦୃଷ୍ଟି) ହଅନ୍ତି (ଲକ୍ଷ ଲକ୍ଷ ପଡ଼ି ରହନ୍ତି) ଯେ ଆମ୍ଭର ଦୁଖ ହେବ । ଏପରି ଦୃଷ୍ଟିର ଅର୍ଥ ବୁଝି ଅବୁଝା ରଜା କହିଲେ, ବଡ଼ିଆ ଦୃଷ୍ଟିଏ ଠିକ୍ କରିଚ ମନ୍ତ୍ରୀ । ଭଲ ହବ । ସେଇଠି କଟଶ କାଲିଠାରୁ କରିବା । ଦୃଷ୍ଟିର ରୂପ ଦେଖି ଦେଖି ହନଟା ଦନ୍ତ ମରି ଗିବ । ତାଙ୍କ କଥାରେ ମନ୍ତ୍ରୀ ସେଇଠି କଟଶ କରାଇଲେ ।

ଅଦିନ ଜଣେ ବାହ୍ମଣ ଗର୍ଭ ଜନ ନିଜାକୁ ସ୍ତ୍ରୀ ଓ ପାଞ୍ଚବର୍ଷର ଝିଅଟି ନେଇ ନେଇ ରାଜ୍ୟବାଟେ ଆସିଲା । ଝିଅକୁ ଭୋକ କରିବାରୁ ସେ କହିଲେ, ବାପା ! ଭୋକ ! ସେ ଝିଅ ଭାର୍ଯ୍ୟାକୁ ଜଣେ ପିଣ୍ଡାରେ ବସାଇ ସେଠି କେଉଁଠି ଚୁଡ଼ା ପାଇବାକୁ ଦେଖିବାକୁ ଗଲା । ସେ ଝିଅଟି ସେଠାଏ ବୁଲି ଧରି ଘରବାଲ କାନ୍ଥରେ ଗାଧ ବାଟଥାଏ । ଘରବାଲ ତ ବନରେ କବାଟ କଲ ବେଗଥାଇ । ଝିଅଟି କୁଣରେ କାନ୍ଥ କୋଣଚାର ନେଇ ଠଉକବାଳ ଗିଳି ଦାନ୍ତୁ ନେଲା ତାକୁ ବନ୍ଧ କରେ ଗୃହମାଣ ବେବାରୁ ଝିଅ ପିଲାଟି ମରିଗଲା । ତା ମା' ପିଲାଟିକୁ ଧରି କାନ୍ଦୁଛି । ଏଇବେଳେ ତା ବାପା ଆସିବାରୁ ସେମାନେ ମରା ଝିଅଟାକୁ ନେଇ କୋଟୱାଳ ସଙ୍ଗରେ ଯାଇ ହଜୁର ଦାଗ୍ଦରେ ରଜା କଚେରୀରେ ଫେରାଦ ହେଲେ ।

ରଜା ପଚାରିଲେ ମନ୍ତ୍ରୀ ! କ'ଣ ବିଚାର କରିବା କୁହ । ମନ୍ତ୍ରୀ ପାଳବନ୍ଧା ହୋଇ କହିଲେ, ଚଉକିଆର ଦୋଷ । ସେ ତାକୁ ଝିଅଟିଏ ଦଉ । ରଜା ପଚାରିଲେ ଝିଅଟ ମରିଗଲା, ଚଉକିଆ ଝିଅ କୁଆଡ଼ୁ ପାଇବ ଯେ ତାକୁ ଦେବ ? ମନ୍ତ୍ରୀ ଟିକିଏ ଭାବି କହିଲେ, ଏ ନେଇ ତା ଭାର୍ଯ୍ୟାକୁ ଚଉକିଆକୁ ଦଉ । ଚଉକିଆ ତା' ଗର୍ଭରେ ଝିଅଟିଏ ଜନ୍ମାଇ ଦେବ । ଏହା ଶୁଣି ରଜା

କହିଲେ ବେଙ୍ଗିଆ ଉତ୍ତର ଦେଉଛନ୍ତି ମନ୍ତ୍ରୀ । ସେମାନେ ସେମିତି କରନ୍ତୁ ଏ କଥା ଶୁଣି ବଡ଼ ଖୋଇଟି ମନ୍ତ୍ରୀ ଶିଷ୍ୟଙ୍କୁ ମୋତି ଦେଇ ଆଜ ସହ୍ୟାନ ଦେବ ବଞ୍ଚେଇବାକୁ କହିଲ; ମୋର ହିଂସ ନେଉଡ଼ା ନାହିଁ । ଚଉକିଆ ତା ଘରକୁ ଯାଉ,ମୁଁ ମୋ ବାଟରେ ଯାଉଚି । ତତ୍‌କ୍ଷଣ ସେ ସ୍ୱାମ୍ୟ ଗୃହ ଚଳିଗଲା ।

ତହିଁପରେ ହରୁଣ ଦାସ ଆସି ଗୁହାରି କଲା, ହଜୁର ! ମୁଁ ଗାଧୋଇ ଅଛୁଥିଲି ଗୋଟାଏ ପାରଡ଼ା ପୋକ ଉଡ଼ ଉଡ଼ ମୋ ଆଖିରେ ପଡ଼ି ଦେବାରୁ ମୋ ଆଖି ଖରାପ ହେବାକୁ ବସିଲାଣି । ଏଥକୁ ବିଚାର କର । ରାଜା କହିଲେ ପରେଚ । ଦୁଷ୍ଟ ଆଖି ଖରାପ ହେଲେ କାର୍ଯ୍ୟ ହେବ କପଣ ? ମନ୍ତ୍ରୀ ଏଥକୁ ଉତ୍ତର ଦଉଅ । ମନ୍ତ୍ରୀ ମୁହଁ ପାଳବନ୍ଧ ଖୋଲି କହିଲେ, ଦୋଷ ପାରଡ଼ାପୋକର ନୁହଁ ଙ୍କ ଆଖିର ନୁହେଁ । କଥାରୁ ପୂଳର ନିର୍ଦ୍ଦୋଷ । ଅଦ୍ଧ- ରାଜବୈଦ୍ୟ ଡକାଇ ଭଲ କରିବାକୁ କୁହା ଯାଉ । ରଜା ହୁକୁମ ଦବାରୁ ରାଜବୈଦ୍ୟ ଆସି ପୋଥି ଫିଟାଇ ନିଦାନ କହିଲେ—

'ଦଗ୍ଧ ମନସାକ୍ଷ ପ୍ରେଃ ନେତ୍ର ରୋଗ ସମୁତ୍ପନ୍ନ'

ନିଦାନ କହନ୍ତି ପାରଷୀଦ, ଅରଖର୍ଷୀର ଓ ସିନ୍ଧୁଷୀର ସମପରି ମାଣରେ ଆଖିରେ ଦେବାଇଦେବେ ଆଖିରୋଗ ଭଲହେବ । ଏ କଥା ଶୁଣି ହରୁଣ ଚମକ ଉଠି କହିଲା, ଇଲ ବୋଇ ! ସେଗୁଡ଼ା ବଡ଼ ପୋଡ଼ବ ମୁଁ ତାକୁ ଆଖିରେ ପକେଇବ ନାହିଁ । ତହୁଁ ରାଜବୈଦ୍ୟ ପୋଥି ଦେଖି କହିଲେ—

ଲଙ୍କେ ପାଳ କରେଁ ଧଣ, ପଶ୍ଚ ଅଗ୍ନି ବର୍ତ୍ତି କଣ ।
ସେ ଦଗ୍ଧ ପାଳ ମଳଦ୍ୱାରେ, ଦେବାଏ ହେବେ ବାଥିହରେ ।

ଏକଥା ଶୁଣି ହରୁଣ କହିଲା, ତାହା କରିବ ଦେଛ ହେଲେ ସିମିତି କରିବେକ କିଏ ? ରଜା କହିଲେ ସେ କାର୍ଯ୍ୟ ଆମ ମନ୍ତ୍ରୀ କରିବେ । ମନ୍ତ୍ରୀ ହଉ କହି ବୈଦ୍ୟଙ୍କୁ ଗୋଟିଏ ଗଣ୍ଡ ପୁଆସାର

ଦେବାକୁ ବଢ଼େଇଲେ । ରଜା ଗଧଟିଏ ଆଣେଇ ବୈଦ୍ୟଙ୍କୁ ଦେଇ କହିଲେ ଓକାଦେଲେ ଏଥିରେ ଚଢ଼ି ଶୀଘ୍ର ଆସିବ । ବୈଦ୍ୟ ଗଧ ନେଇ ଗଲେ । ମନ୍ତ୍ରୀ ଗଲେ ବଗୁଲିର ଚେଷ୍ଟା କାର୍ଯ୍ୟ କରିଦେବାକୁ ରଜା କଂଟେଶା କରିକ ଅସିଲେଚ, ମନ୍ତ୍ରୀ ଗୁହ୍ୟ ଘୋଡ଼େଇ ଆସିଲେ । ବଗୁଲି ମଲାମଳେ କଲେ। ଗଣିଲେ ।

ବଗୁଲି ଘରର ଅବୁଝା ରଜା;ଗୋଲବୁଦ୍ଧି ମନ୍ତ୍ରୀ ଏକଥା ନ୍ୟାୟ କରିବା କଥା ଦେଶଯାକ ବ୍ୟାପିଗଲା । ଥରେ ସ୍ୱେରବଳ ସ୍ୱେରେଇ ବାକୁ ଯାଇ ଭଗୁ ମିଶ୍ର ଘରେ ପଶିଲେ । ସିନ୍ଧଗାଡ଼ ଖୋଳ ଗଲ- ବେଳକୁ କାନ୍ଥଟା ଝଳପଡ଼ି ଖସିଟା ସ୍ୱେର ସେଇଠି ମରିଗଲେ । ସେଥିରୁ ଦୁଇଟା ଚଞ୍ଚଯାକ ଅବୁଝା ରଜା କଚେରିରେ ଫେରାଦ ହୋଇ କହିଲେ, ହଜୁର । ଆମର ବୁଢ଼ାଆଦ ସ୍ୱେର । ସ୍ୱେରଙ୍କର ଆମେ ପେଟ ପୋଷୁ । ଆମେ ସ୍ୱେରକରି ଯାଇ କାଲି ଭଗୁମିଶ୍ର ଘରେ ସ୍ୱେରକଲାବେଳେ ତା କାନ୍ଥ ଭଡ଼ି ଆମଦଳରୁ ଦୁଇଜଣଙ୍କୁ ମାରିଦେଇଛି । ଏଥିର ବିଚାର ଶୀଘ୍ର କରିବା ହୁଅନ୍ତୁ । ଏକଥା ଶୁଣି ରଜା ଅବାକ୍ ହୋଇ କହିଲେ; ଏତ ସାମାନ୍ୟ କଥା ନୁହେଁ । ଚାରିଟା ଚୋର ଖୁଣ ହେଲେ; ଆମେ ପୃଥ୍ୱୀପାଳକ ରଜା ହୋଇ ବିଚାର ନ କଲେ କ ହୋଇବ ? ମନ୍ତ୍ରୀ ଏହାର ବିଚାର କରାଅ ।

ଗୋଲବୁଦ୍ଧି ମନ୍ତ୍ରୀ ମାଇଟିରୁ ପାଳବଣ୍ଡା ଖୋଲି କହିଲ; କଥାଟା ସାଦାସିଦା । ଭଗୁମିଶ୍ର ଘରେ ସିନ୍ଧଖୋଳିବା ପରେ ଚୋର ମାରୁ ହେଲ; ସେଥିକୁ ସେହ ଦାୟୀ ହେବ । ସେ କାନ୍ଥ ଦେବାରେ କଟା ରଖିଥିଲା । ରଜା କହିଲେ; ଥିକ କହୁଚ । ଡକାଅ ସେ ଭଗୁ ମିଶ୍ରକୁ । ଭାଗୁ ମିଶ୍ର ଆସି ଦାନ୍ତ ରଜା କହିଲେ; ହଇହେ ମିଶ୍ର ! ତୁମେ କାନ୍ଥ ଦେବାରେ ଅଦରକ କରିଥିଲ କାହିଁକ । କାନ୍ଥ ଝଳ ଚାରିଟା ଚୋର ମରିଛନ୍ତି । ସେଥିଲାଗି ତୁମେ ଶୂଳରେ ବସିବ । ମିଶ୍ର ହାତଯୋଡ଼ି କହିଲ ଆଜ୍ଞା କୁଲିଅ ଭାଉଡ ସେ କାନ୍ଥ ଦେଇଥିଲ ।

ମଜ୍ଜୁଷ ପ୍ରିୟ ନେଇ କାନ୍ଥ କସ୍ତ କର୍ଣ୍ଣ ଦେଉଛ । ରାଜା କହିଲ, ଆଏ
ସେଗୁଡ଼ା ଏପରି ଠକନା ? ହଳ ମୂଲ ଧ୍ ଇ କାନ୍ଥ ଭୂଳ୍ ଜଲେ,
ତୁମେ ନର୍ଦ୍ଦୋଷୀ । ଡାକ କୁରୁପା କାନ୍ଥ ଆଲୁ । କୁରୁପା ଆସିବାରୁ
ରଜା କହବେ, କରେ କୁରୁପା ! ତୁ ଏ କେ ଜେନମିଁ କଲୁ କାହିଁକ ।
ସାଗୁ ମିଶ୍ରଠୁ ମୂଲ ନେଇ ତା' କାନ୍ଥ ୟାର ଅଦନ୍ତ କରଦେଲୁ
ଯେ ଅବକା ଟପ କାନ୍ଥ ଉଷୁଡ଼ି ହେଉ ଯାଇଛି । ଚୋରଙ୍କର ପ୍ରାଣ
ଗଲା । ସେଥିପାଇଁ ତୋତେ ଶୂଳ ଦଣ୍ଡ ମିଳ । କୁରୁପା ତରକୁ
କହିଲ, ଆଜ୍ଞା ! ମୁଁ ତ ଭେଣ୍ଡିଆ ଲୋକ, କାଣ୍ଡ ଦେଖି ଯାଉଥିଏ ।
ସେଦନ ମୁଁ କାନ୍ଥ ଲଦଲାବେଳେ ବୁଲା ଦାସୀ ଅଣିଟା ସେଇ ସାଖ
ଦେଇ ଦଶଥର ଯିବାଆସିବା କରିବାରୁ ଲସ୍ତ ଲଷ ତାରପରେ
ଭୁଲିଗଲ । ସେଥିପାଇଁ କାନ୍ଥ କସ୍ତ ଉଛି । ରଜା କହିଲେ,
ତାହାହେଲେ ତୋର ଦୋଷ ହବ କାଅ ? ଡକାଅ ସେହ ବୁଲା
ଦାସୀକୁ । ବୁଲା ଆସିବାରୁ ରଜା କହିଲେ, ଆରେ ବୁଲା ! ତୁ
ଆମ୍ଭଙ୍କୁ କଣ ମଣିଛୁ କହେ । ଆଉ । ସାଗୁ ମିଶ୍ରଙ୍କ କୁରୁପା କାନ୍ଥ
ଦେଉବେଳେ ତୁ ସେଇ ସାଖ ଦେଇ ଯାଇଥିଲୁ କାହିଁକ ? ସେଇଟା
ଭେଣ୍ଡିଆ 'ବଣ୍ଡିଆ' ତୁ ତା ଆଗରେ ଲଣ୍ଡଭଣ୍ଡ ହେଉଥିଲୁ
କାହିଁକ ? ତୋ ଆଡ଼କୁ ତା ଲସ୍ତ ଯିବାରୁ ସିନା କାନ୍ଥ କସ୍ତଉଛଳ ।
ସେର ମଦେ କାନ୍ଥଭୁଷୁ ଛି । ତୁଚ ଅବକା ଶୂଳରେ ବସିବୁ । ଥାଣ
ନେଇ ସ୍ତହୁଁ ଛୁ କ'ଣ ? ବୁଲା ହାତଯୋଡ଼ି କହିଲ ଆଜ୍ଞା । ମୁଁ
କେବେ ସେବାରେ ପିଶାଚ ଭଦ୍ରୋଖୁ ଯାଏ ନାହିଁ । ସେଦନ
ବଡ଼ୁରଙ୍କ ମାହୁଁ ଛଟା ବାଟରେ ଦାସ ବାନ୍ଧିବାରୁ ମୁଁ ସେଇବାଟେ
ପାଣି ଆଣିବାକୁ ଯାଉଥିଲ । ରଜା କହିଲ, ତା'ହେଲେ ତୋର
ଦୋଷ ହବ କାହିଁକ ? ମନ୍ତ୍ରୀ । ମାହୁନ୍ତକୁ ଡକାଅ । ମାହୁନ୍ତ
ଆସିବାରୁ ରଜା କହିଲ, କରେ ମାହୁନ୍ତ । ତୁ ହାଥଟାକୁ ବାଟ
ଚଲବାଟରେ ବାନ୍ଧି ଥିଲୁ କାହିଁକ ? ଅବକା ଯେ ଘଣ୍ଟୁ

ଦେଖିଲେ ନା ଚନ୍ଦ୍ରାଶ୍ରୀଆର ସଳଖ ଗାଣ୍ଡିଟାକୁ ହରିବୋଲ ମହାନ୍ତ ବଙ୍କେଇ ଦେଇଛ । ସଳଖ ଗାଣ୍ଡି ନ ହେଲେ ଶୂଳ ସୁରୁଖୁରୁରେ ପଶିବ ନାହିଁ, ହରବର ହବାର କଥା । ରଜା କହିଲେ ଡାକ ହରିବୋଲଙ୍କୁ । ସେଇଟା ଶୂଳରେ ବସି ସଳଖ ରଖି ରହିଛ ତାକୁଇ ଶୂଳି ଦେବା ।

ଚନ୍ଦ୍ରଭଗବାନ୍ ଯାଇ ହରିବୋଲ ମହାନ୍ତଙ୍କୁ ଖବରଟା ଜଣାଇଲା । ହରିବୋଲ ଟିକିଏ ଚିନ୍ତାକରି ପୁଅକୁ ଡାକି କହିଲେ, ଆରେ ଅଦିଶିଆ ! ଏ ରଜାର ତ ଝୁବର ମୋ ଫାଶୀ ଉଡ଼େଇବେଲ । ଆରେ ଆଜ ଶୂଳାଲୀ କରି ସୁତ ପରଡ଼ଇବ କଣ ? ବାପା ! ଏ ବେଳଟେ ତୁ ଟିକିଏ ସାହାଯ୍ୟ କରିବୁ କିରେ ? ଏହା ଶୁଣି ପୁଅ କହିଲା ଅଲବତ କହିବ ବାପା ! ମୋତେ କଣ କରିବାକୁ ହେବ କୁହ । ମହାନ୍ତ କହିଲେ ତୁ ବହୁ ଛପି ଦେଇଯାଇ ଲୋକ ଗହଳରେ ଥିବୁ । ମୁଁ ଯେତେବେଳେ ଶୂଳଯନ୍ତ୍ରି ବାହାରିବ, ତୁ ଆସି ମୋ ହାତରୁ ଶୂଳ ଛଡ଼େଇ ନେଇ କହିବୁ, ଏ ଶୂଳ ମୁଁ ନେବ ବାପା । ଏତକ କରିବୁ । ତା ପରେ ଯାହା କରିବାର କଥା ମୁଁ କରିବ । ଏ କଥାରେ ପୁଅ ରାଜି ହେବାରୁ ହରିବୋଲ ମହାନ୍ତ ଜଗରଙ୍କ ସଙ୍ଗରେଯାଇ ଅବୁଝା ରଜା କଚେରୀରେ ହାଜରହେଲେ ।

ରଜା ତାଙ୍କୁ ଦେଖି ମନ୍ତ୍ରୀକି କହିଲେ, ଯାର ଗାଣ୍ଡିଟା ତ ଏତେ ସଳଖ ଅଛି, ଏହାକାଣି ଡେରି କରୁଥିଲେ କାହିଁକି ? ଏହାକୁ ଶୂଳ ଦବାର କାରଣଯାକ ଶୁଣେଇ ଦିଅ । ମନ୍ତ୍ରୀ ପାଳବଣ୍ଡା ଖୋଲି କାରଣ ଦର୍ଶାଇବାରୁ ରଜା କହିଲେ, ମହାନ୍ତଏ ଆଉ ବିଳମ୍ବ କାହିଁକି; ଶୂଳଧରି ଚାଲ । ମହାନ୍ତ ଅଉ କରିବେ କଣ । ଶୂଳଟି ଧରି ଆଠ ଦଶ ପାହୁଣ୍ଡ ଯାଇଛନ୍ତି ଏତେବେଳେ ଲୋକ ଗହଳରୁ ତାଙ୍କ ପୁଅ ଅଦିଶିଆ ବାହାରି ଆସି ମହାନ୍ତଙ୍କ ହାତରୁ ଶୂଳଟା ଧରି

ମଣ୍ଡପ । ଅଲୁଝା ବନ୍ଧୁରଜା ଓ ଗାଳବଣ୍ଡା ମନ୍ତ୍ରୀ ଦୁହେଁ ଭୂମାଆଖି ଦେଖେଇ ମରିଯିବାରୁ ହରିବୋଲ ମହାନ୍ତ ହରିବୋଲ ଦେଇ ବିଦାୟ ନେଲେ । ସେହିଦିନଠାରୁ ଏ ଗଜ୍ୟର ଲୋକ ଗଣ୍ଡରେ କାର୍ଯ୍ୟ କରିବା ଅଭ୍ୟାସ ଗୁଡ଼ ଦିନରେ କରୁଚନ୍ତି । ଆଜି ସେ ଶୂଳ ଦୁଇଟାକୁ ଫୁଲ ଚନ୍ଦନ ଦେଇ ପୂଜୁ ଛନ୍ତି । ବୁଝିଲୁଟି ଅବୋଲକର ଏ ଗପଟିକୁ ମୁଁ ସଚିତ୍ର ଦ୍ୱାଦଶକୁମାର କାହାଣୀରେ ଲେଖିଦେଇଚ ଶୁଣି ନ ଥିଲୁ ? ଏହା କହି ଗୋସେଇଁ ଖାଇବାକୁ ବଡ଼ା ବଡ଼ି କଲେ । —*—

## ମୋକ୍ଷଶିଳା ଓ ମୁକ ମୁକ୍ତିଶିଳା କଥା

ଅଲୁଝା ରଜା କଥା ଶୁଣି ଚର୍ଣ୍ଣି ଅରବନ ଅବୋଲକର ଓ ଗୋସେଇଁ ଦିହେଁ ଉତ୍ତରମୁଖା ହୋଇ ବାହାରିଲେ । ଯାଇ ଯାଇ ଗୋଲୁଦ୍ୱାର ଚାଂଥା ହେବାରୁ ଗୋସେଇଁ କହିଲେ, ଅବୋଲକର ! କିଛି ବେଶୀ ବାଟ ବିଶ୍ରାମ ନ କରି ଆଜ ଗ୍ଭଲ ହେବ ନାହିଁରେ । ତୁ କେଉଁଠି ଗୋଟିଏ ଘରଭଡ଼ା ମିଳିବ ଦେଖିଲୁ ? ଅବୋଲକର ଯାଇ ହୋଇ ନିକଟରେ ଗୋଟିଏ ବ୍ରାହ୍ମଣ ଘରେ ଘରଟିଏ ଭଡ଼ା କରିବାରୁ ଦିହେଁ ସେଇଠି ରହିଲେ ।

ଚର୍ଣ୍ଣି ଆରବନ ଅବୋଲକର ହାତ ସଉଦା କରି ଆଣି କହିଲା, ଗୋସେଇଁ ! ହାଟରୁ ଶୁଣିଲି ଏ ଅଞ୍ଚଳର ନା ମୋକ୍ଷଶିଳା ଆଗରୁ ଗୟାଶିର୍ଷ । ଏ ଜାଗାଟିର ନା ମୋକ୍ଷଶିଳା କାହିଁକି ହେଲା କହିବ ଯେବେ ରହିବ, ନୋହିଲେ ଗଣ୍ଡିଳଲୁଟା ଗୁଡ଼ ଖୁଲିଲ । ଗୋସେଇଁ କହିଲେ ମୋକ୍ଷଶିଳା, ମୁକ୍ତିଶିଳା, ଗୟାଶିର୍ଷ ସବୁକଥା କହିବା । ସ୍ଥିର ହୋଇ ବସ ।

ସୃଷ୍ଟିର କର ଚଗଲ୍ ମଥା
ଅବୋଲକରରେ ଶୁଣ ସେ କଥା ।

ପୂର୍ବଯୁଗରେ ସତ୍ୟବ୍ରତ ନାମରେ ଜଣେ ବ୍ରାହ୍ମଣ ଏଠାରେ ଥିଲେ । ବ୍ରାହ୍ମଣ ସତ୍ୟର ଉପାସକ । କେତେଦିନ ପରେ ତାଙ୍କର ଝିଅଟିଏ ହେଲା । ଝିଅଟି ଦେଖିବାକୁ ଉର୍ବଶୀଠାରୁ ସୁନ୍ଦରୀ । ହେଲେ ସେ ଜନ୍ମ ହେବାପରେ ଦେଖାଗଲା, ତା ଗ୍ରୀବାରେ ଏଣ୍ଡୁ ନାମରେ ରେଖାଦାଗ ରହିଛି । ବ୍ରାହ୍ମଣ ପଢ଼ି କହିଲେ, ଝିଅ ଜନ୍ମ ପୂର୍ବରୁ ନା ଲେଖାଇ ଆଣିଛି ଯେତେବେଳେ' ତା ନା ହେଉ 'ଧର୍ମବ୍ରତା' ରହୁ ।

ଝିଅଟି ଶୁକ୍ଳ ପକ୍ଷର ଚନ୍ଦ୍ରକଳା ପରି ଦିନକୁ ଦିନ ବଢ଼ି ଚାଲିଥାଏ ହେଲା । ତା' ପରେ ସେ କଲା ଶିବ ସେବା ଯୋଗ । ସବୁବେଳେ ତା ମୁହଁରେ ଥାଏ –

''ଗାଢ଼ କୁନ୍ତଳ ନେତ୍ରମୁକ୍ତ୍ୱକ ଚନ୍ଦ୍ର ଶୀତଳ ଭୂଷିତଂ
ହେ ଶିବାପତି ପାର୍ବତୀପତି ପାହିମାଂ ଭବସାଗରମ୍''

ଦିନେ ଧର୍ମବ୍ରତା ଶିବାଳୟରେ ଯୋଗରେ ବସି ଧ୍ୟାନ କରୁଛି । ଏହିବେଳେ ପୁଲହ ଋଷି ଆସି ଦେଖିଲେ, ଉର୍ବଶୀ ରୂପଜିତା ଷୋଡ଼ଶୀ ଯୁବତୀଟିଏ ଯୋଗଧ୍ୟାନ କରୁଛି । ତା'ର ରୂପ ଦେଖି ଋଷି ମୁଗ୍ଧ ହୋଇ ବସି ରହିଲେ । ସୁନ୍ଦରୀ ଯୁବତୀଙ୍କୁ ତ 'ଋଷି ମୋହିନୀ' କହନ୍ତି ! ଏ ଋଷିଙ୍କୁ ରୂପ ତପରେ ଭୁଲାଇ ଦେବାରୁ ପୁଲହ ସେଇଠି ବସିଥାନ୍ତି । କେତେବେଳେ କନ୍ୟାର ଧ୍ୟାନ ଭଙ୍ଗ ହେବାରୁ ଦେଖିଲା ଋଷି ଜଣେ ଅପେକ୍ଷା କରି ବସିଛନ୍ତି । କନ୍ୟା ଗଳାବସ୍ତ୍ର ହୋଇ ତାଙ୍କୁ ପ୍ରଣାମ କରି କାରଣ ପଚାରିବାରୁ ଋଷି କହିଲେ, ମୁଁ ବ୍ରହ୍ମାଙ୍କ ମାନସପୁତ୍ର ପୁଲହ ଋଷି । ତୁମର ତପ ରୂପ ଦେଖି ମୁଗଧ ହୋଇଛି । ମୁଁ ତୁମକୁ ବିଭା ହେବାକୁ ଚାହେଁ । ତୁମେ ରାଜି ହେଲେ ହେଲା ।

ପୁରୁଷ ବୋଲି ଋଷି ସିନା କହିଥିଆ ପଣ କରି କହିଦେଲେ । ନାରୀର୍ତ୍ତ 'ସ୍ତ୍ରୀଚରିତ୍ର ପଚଳ ମୁହ ଫିଟେନା' । ତାଛଡ଼ା ସେକାଳର

ଝିଅ ନେଇ । ତପ ବଳରେ ଋଷି ବାସ କରି ପାରୁଛ । ବାଟ, ଘାଟ, ହାଟରେ କ'ଣ କରି ଠିକ୍ କରି ବସନ୍ତା ? କହୁଲ, ଏ କଥା ମୋତେ କହୁଛନ୍ତି କାହିଁକି ? ମୋ ବାପା ଅଛନ୍ତି ତାଙ୍କୁ ଯାଇ କୁହନ୍ତୁ । ସେ ଯଦି ହଅନ୍ତି ମୁଁ କ'ଣ ମନା କରିବି ? ସେଇଠୁ ପୁଲହ ଆସି ସତ୍ୟବ୍ରତ ବ୍ରାହ୍ମଣଙ୍କୁ ଝିଅ ଦେବା କଥା କହିଲେ ।

ପୁଲହ ଋଷି ସେଇଁଠି ଜୋଇଁ ହବାକୁ ଯୁଝୁଁଛନ୍ତି, ସତ୍ୟବ୍ରତ ବା ମନା କରନ୍ତେ କପରି । ସେ ଖୁସିହୋଇ ବ୍ରତାକୁ ପୁଲହଙ୍କ ସଙ୍ଗରେ ବାହା କରେଇ ଦେଲେ । ସତୀ ଶିରୋମଣି ଧର୍ମବ୍ରତାଙ୍କୁ ନେଇ ପୁଲହ ଚଳିଲେ ଝଟେଁ ଝଟେଁ । ତପ ପ୍ରଭାବରୁ ଉମା ଶିବଙ୍କୁ ପାଇଲା ପରି ଧର୍ମବ୍ରତା ଧର୍ମବଳରୁ ପୁଲହପରି ଋଷିଙ୍କୁ ପତିକରି ସୁଖରେ ଥାନ୍ତି । ଶେଷରେ ତାଙ୍କର ଗର୍ଭସଞ୍ଚାର ହେଲା । ଋଷି ଦେଖିଲେ, ପିଲାପିଲି ଜନ୍ମ ହେବା ଆଗରୁ ତାଙ୍କ ପାଇଁ କାଠିକୁଟା ନେଇ ଚଢେଇ ପରି ଖାଦ ପଦ ବସା ବାନ୍ଧିପାରେ, ମୁଁ ଋଷି କ'ଣ ପାରିବି ନାହିଁ ? ଏକଥା ଭାବି ଏଇ ପାହାରେ ଯାହିତାହି କରି ଆଶ୍ରମଟିଏ ତିଆରି କରି ରହିଲେ ସେ । ଏଇଠି ଋଷି ଧର୍ମବ୍ରତାଙ୍କର ସାତ ପୁଅ, ତିନି ଝିଅ ଜନ୍ମ ହୋଇ ପାଠ ପଢିଲେ । ଧର୍ମବ୍ରତା ପତିବ୍ରତା କରି ଦିନ କାଟନ୍ତି । ଋଷି ସଂସାରଟି ସ୍ୱର୍ଗ ସୁଖପରି ଚଳିଯାଏ ।

ଦିନେ ପିଲାପିଲି ପଢିବାକୁ ଯାଇଛନ୍ତି, ପୁଲହ ଋଷି ଖଟିଆଟିରେ ଶୋଇ ଧର୍ମବ୍ରତାଙ୍କୁ କହିଲେ--"ହେ ଶୁଣୁଚ । ମୋ ହାତ ଗୋଡ଼ ଖାଲି ଟିଣ୍ଟିଣା କରୁଛି, ମେଘୁଆପାଗ ଠେଙ୍ଗାପିଟାଜ୍ୱର ହବ କି କ'ଣ ? ତୁମେ ଆସି ସୋରିଷ ତେଲ ଗରମ କରି ମୋ ଗୋଡ଼ ହାତରେ ଘଷିଦିଅ ।" ଏହାଶୁଣି ଧର୍ମବ୍ରତା ତେଲ ଗରମ କରି ଘଷି ଦେବାରୁ ପୁଲହଙ୍କୁ ବେଶ୍ ନିଦ ଲାଗିଗଲା ।

ଋଷି ଶୋଇଛନ୍ତି, ଏହିବେଳେ ତାଙ୍କ ବାପ ବ୍ରହ୍ମା ଆସି ପହଞ୍ଚି ନାତି ଇତ୍ୟାଦିଙ୍କୁ ଡାକିଲେ । ପିଲଗୁଡ଼ାକ ତ ସେତେବେଳେ ଖେଳ ଛୁଟିରେ କୋଉଠି ଦୌଡ଼ୁଛନ୍ତି ଠିକଣା ନାହିଁ । ପୁଲହ ତ ଆରାମ ନବରେ ଘୁଙ୍ଗୁଡ଼ି ମାରୁଛନ୍ତି । ଧର୍ମବ୍ରତା ଏବେ କରେ କ'ଣ ? ବ୍ରହ୍ମାପରି ଦେବତା ଅତିଥି, ପୁଣି ଶ୍ୱଶୁର । ନିରାଶ ହୋଇ ଲେଉଟି ଗଲେ ଅନେକଦାରେ ମଧ ନେକ ହେବ ନାହିଁ । ସେହିକଥା ଭାବି ଧର୍ମବ୍ରତା ସ୍ୱାମୀଙ୍କ ପାଦସେବା ଛାଡ଼ି ଉଠିଲେ । ଭାବିଲେ ସ୍ୱାମୀ ଜାଣିଥିଲେ ପିତାଙ୍କ ସେବା କରିଥାନ୍ତେ । ସେ'ତ ଶୋଇଛନ୍ତି, ମୁଁ ତାଙ୍କ କାର୍ଯ୍ୟଟା ନ ତୁଲାଇବି କେମିତି ? ନଦ ଲାଗିବ ପାପ । ଏହା ଭାବି ସେ ଆସି ବ୍ରହ୍ମାଙ୍କ ସେବାରେ ଲାଗିଲେ ।

ପୁଅଠାରୁ ବୋହୂଙ୍କୁ ଶ୍ୱଶୁର ବେଶି ସ୍ନେହ ଶ୍ରଦ୍ଧା କରନ୍ତି । ତାଙ୍କର ହାତରୁ ପାଇବାକୁ ଖାଇବାକୁ ଅଧିକ ଆଶା ତାଙ୍କର । ନ ହେଲେ ଦଶରଥ କ'ଣ ସୀତାଙ୍କଠାରୁ ବାଲିପିଣ୍ଡ ମୁଠିଏ ନେଇ ରାମଙ୍କୁ ପିଣ୍ଡ ଦେବାକୁ ମନା କରିଥାନ୍ତେ ? ଧର୍ମବ୍ରତା କ୍ଷୀର ଫଳ କିଛି ଦବାରୁ ବ୍ରହ୍ମା ଖାଇ ସେଇଠି ଦଉଡ଼ି ଆଁଟିରେ ଗଡ଼ପଡ଼ ହେଲେ । ଏହିବେଳେ ପୁଲହଙ୍କ ନିଦ ଭାଙ୍ଗିଯିବାରୁ ସେ ଉଠି ଦେଖିଲେ, ତେଲ ଗିନା ଅଛି, ତେଲ ଦବା ଲୋକ ନାହିଁ । ସେଇଠୁ ଋଷିଙ୍କର ରୋଷ ବଢ଼ିଲା । ସେ ଉଠି ଆସିବାବେଳକୁ ଦେଖିଲେ ଧର୍ମବ୍ରତା ତେଣୁ ତରତର ହୋଇ ଆସୁଛନ୍ତି । ସେଇଠୁ କ୍ରୋଧ ସମ୍ଭାଳି ନ ପାରି ଧର୍ମବ୍ରତାକୁ କହିଲେ ତୁ ପତି ଆଜ୍ଞା ଅବଜ୍ଞା କରି ଯାଇଚୁ, ସେ ହେତୁ ତୋତେ ମୁଁ ଶାପ ଦେଉଛି ତୁ ପଥର ହୋଇଯା । ପୁଲହଙ୍କ ମୁହଁରୁ ଏ କଥା ଶୁଣି ସତୀ ଧର୍ମବ୍ରତା କହିଲେ, ତୁମେ ସ୍ୱାମୀ ହୋଇ ନ ଜାଣି ନ ବୁଝି ମୋତେ ଶାପ ଦେଲ । ମୁଁ ଯଦି ଅଭିଶାପ୍ତ ହଏ, ତାହାହେଲେ କ'ଣ ହେବ ? ହେଲେ ମୁଁ

ତୁମକୁ ସ୍ୱାମୀ ହେତୁ ଅଭିଶାପ ଦେବ ନାହିଁ, ଏ କାର୍ଯ୍ୟପାଇଁ ତୁମ୍ଭଙ୍କୁ ଶିବ ଶାସ୍ତି ଦଅନ୍ତୁ ।

ପୁଣି ଦ୍ୱିଜ କହିଲେ, ମୁଁ ତୋତେ ଗୋଡ଼ ଚାପି ଦେବାକୁ ବସେଇଥିଲି । ମୋ ଉପରେ ମୁଁ ଜଗେଇ ଉଠିଗଲୁ କାହିଁକି ? ଧର୍ମବ୍ରତା କହିଲେ, ମୁଁ ଚେଳବେଳ ଗୋଡ଼ ଚାପି ଦେବାରୁ ତୁମେ ତ ତୁମ୍ଭକର୍ଣ୍ଣ ଅଧୁର ପର ଶୋଇବୁ ହେଲ । ସେତିକିବେଳେ ଭୃଗୁ ବାପା ଆସିବାରୁ ତାଙ୍କ ସେବା ସାଧି ତୁମର କରିବାର କାର୍ଯ୍ୟଟି ମୁଁ ଯାଇ ଭୁଲେଇ ଦେବ ! ତୁମକୁ ଡାକିଲେ ନିଦ ଭଙ୍ଗ ଉଠିଲେ ଆରାମରେ ବାଧା ପଡ଼ିବ ବୋଲି ଡାକିଲି ନାହିଁ । ଏ କାର୍ଯ୍ୟରେ ମୋର କେଉଁ ଦୋଷ ହେଲା ଯେ, ଏତେ ବଡ଼ ଶାପ ଗୋଟାଏ ଦେଇ ବସିଲ ? ଏତିକି ଧର୍ମବ୍ରତା କହୁଛନ୍ତି, ଏହିବେଳେ ଆକାଶରୁ ଶୂନ୍ୟବାଣୀ ହେଲା, ଶିବ କହୁଛନ୍ତି ଋଷି ସୁଜନ ! କ୍ରୋଧ କରି ଅଯୋଗ୍ୟ ଭାବରେ ସତୀଙ୍କୁ ଶାପ ଦେଲ । ସେଥିପାଇଁ ସେ ପଥର ହେଲେ, ତୁମେ ମୂକ ହୋଇ ସେଥିରେ ପଶି ରହିବ ।

ଏହାପରେ ଧର୍ମବ୍ରତା ମନସ୍ତକୁ ଯାଇ ବୃକ୍ଷ ତଳରେ ଅଗ୍ନି ଜଳାଇ ତା ଭିତରେ ତପସ୍ୟା କଲେ । ସତୀଙ୍କର ଘୋର ତପ ପ୍ରଭାବରେ ଜଗତରେ ନାନା ଉତ୍ପାତ ସୃଷ୍ଟି ହେଲା । ପବନ ବହୁ-ପାରିଲା ନାହିଁ । ମେଘ ବର୍ଷା କଲା ନାହିଁ । ଜନ୍ତୁମାନେ ବିନା ଜଳରେ ହା-ହାକାର କରି ମରିଗଲେ । ସେ ପ୍ରଭାବ ସ୍ୱର୍ଗ, ମର୍ତ୍ତ୍ୟ, ପାତାଳ ତିନ ଲୋକ ଯାଏ ସନ୍ତାପ କଲେ । ଏହା ଦେଖି ଦେବତାମାନେ ବୈକୁଣ୍ଠକୁ ଯାଇ ନାରାୟଣଙ୍କୁ ସବୁ କଥା ଜଣାଇଲେ । ନାରାୟଣ କହିଲେ—ଶିବ, ବ୍ରହ୍ମା ଓ ଆଗେ ଦେବତା ସମସ୍ତେ ମିଶି ଯିବା । ସତୀ ଧର୍ମବ୍ରତାକୁ କହି ବୋଲି ତାଙ୍କୁ ତପରୁ ବିରତ କରାଇବା । ଏହା ପାଇଁ ନାରାୟଣ ସମସ୍ତ ଦେବତାଙ୍କୁ ଘେନିଆସି ଯେଉଁଠି ଧର୍ମବ୍ରତା ତପସ୍ୟା କରୁଥିଲେ, ସେଠି ପହଞ୍ଚି ସତୀଙ୍କୁ କହିଲେ,

ଜନନୀ ! ତୁମେ ଯେମିତି ତପ ଆଚରିଛ ତା'ର ପ୍ରଭାବ ତୁମଛଡ଼ା ସ୍ୱର୍ଗ, ମର୍ତ୍ତ୍ୟ ପାତାଳରେ ଆଉ କେହି ସହି ପାରୁନାହାନ୍ତି । ଏପରି ତପସ୍ୟାରୁ ବିରତ ହୁଅ । ତୁମର ଏ ତପସ୍ୟାରେ ଆମେ ତେତିଶ-କୋଟି ଦେବତା ଆସିଛୁ । ତୁମେ ଯା ବର ମାଗୁଛ ମାଗ । ଆମେ ଦେବୁ । ଏହାଶୁଣି ଧର୍ମବ୍ରତା କହିଲେ, ହଉ ଦେବତାମାନେ ବର ଦେବ କହୁଛ ଯଦି, ତା ହେଲେ ମୋ ପତି ଯେଉଁ ଶାପ ଦେଇଛନ୍ତି ସେଥିରୁ ମୋତେ ଉଦ୍ଧାର କରିଦିଅ ।

ଏହାଶୁଣି ଦେବତାମାନେ କହିଲେ, ସ୍ୱାମୀଙ୍କ କଥା କାଟିଦବା କୋଉ ଦେବତାର କ୍ଷମତା ନାହିଁ । ତାକୁ ଛାଡ଼ି ଆଉ ଯାହା ମାଗିବ ମାଗ ସେଇ ବର ଦେଇଦେବା । ଧର୍ମବ୍ରତା ଏହାଶୁଣି କହିଲେ, ହଉ, ଯଦି ତାହା ନ କରିବ ତାହାହେଲେ ସବୁ ତୀର୍ଥର ପୁଣ୍ୟଫଳ ଅଛି । ସବୁ ପୁଣ୍ୟଫଳ ମୁଁ ଶିଳା ହେଲେ ଯେଉଁ ଶିଳା ପୁଣ୍ୟକାମୀଙ୍କୁ ଦେଇପାରିବ ଏହି ବର ଦିଅ । ତେତିଶ କୋଟି ଦେବତାଙ୍କର ଅଂଶ ସେହି ଶିଳାରେ ରହିବ କରିଦିଅ । ଏହାଶୁଣି ଦେବତାମାନେ ତଥାସ୍ତୁ କହିବାରୁ ଧର୍ମବ୍ରତା ତପସ୍ୟା ଛାଡ଼ି ଶିଳାରୂପ ଧାରଣ କଲେ । ଦେବତାମାନେ ସେହି ଶିଳାରେ ନିଜ ନିଜର ଅଂଶ ଦେଇ ତା ନାମ ମୁକ୍ତିଶିଳା ରଖି ସ୍ୱର୍ଗକୁ ଗଲେ ।

ଧର୍ମବ୍ରତା ସେଠାରେ ମୁକ୍ତିଶିଳା ହୋଇ ରହିବାରୁ ପାପୀ, ଧାର୍ମିକ ଯିଏ ଗଲା, ସେଇ ଶିଳାକୁ ଛୁଇଁବାମାତ୍ରେ ମୁକ୍ତିପାଇ ବୈକୁଣ୍ଠକୁ ଗଲା । ଏପରିକି ପଶୁପକ୍ଷୀମାନେ ବି ମୋକ୍ଷମାର୍ଗ ପାଇ ଗଲେ । ଦିନକୁ ଦିନ ମୋକ୍ଷଶିଳାର ମହିମା ଚାରିଆଡ଼େ ବ୍ୟାପିବାରୁ ଦେଶ ବିଦେଶରୁ ଲୋକ ଆସି ମୁକ୍ତିଶିଳା ସ୍ପର୍ଶକରି ବୈକୁଣ୍ଠପୁରକୁ ଗଲେ । ଏପରି ହେବାରୁ ତେଣେ ଯମପୁର ଖାଲି ପଡ଼ିଗଲା । ଯମର ତ ପାପୀମାନଙ୍କୁ ନେଇ ବିଚାର କରିବାର କଥା ? ପାପୀଲୋକ କେହି ନ ଆସିବାରୁ ସେଠାକାର ଘଟଣା ଦେଖିବାଠାରୁ ଉନ୍ନସ୍ୱନ

ଯୋଜନା କାର୍ଯ୍ୟ କରୁ ହୋଇପାରୁନ ନାହିଁ । ଏପରି କି ଗ୍ରାମ-ସେବକା, ପଦସେବକା କେହି ଗୋଟିଏ ନ ଥିବାରୁ ତାଙ୍କର କୋଡ଼ି ଘା’ ଗୋଡ଼ରେ ଗରମ ପାଣି ଟୋପାଏ ବି ପଡ଼ୁନି ନାହିଁ କି ପୁଜ ଧୋଇବାକୁ କେହି ନାହାନ୍ତି । ଏମିତି ଅବସ୍ଥା ହବାରୁ ଯମ ଚିତ୍ରଗୁପ୍ତ କରଣଙ୍କୁ ପଚାରିଲେ, କହେ ! ମନ୍ତ୍ରୀ ହୋଇ ତୁମେ କ’ଣ କରୁଛ ? ଲୋକ ଅଭାବ ଏପରି ଘଟୁଛି କାହିଁକି ? ମର୍ତ୍ତ୍ୟପୁରରେ ସବୁ କ’ଣ ମୃତ୍ୟୁ ଜନ୍ମ ନିୟନ୍ତ୍ରଣ କରିଦେଲେ ?

ଚିତ୍ରଗୁପ୍ତ ଧର୍ମପୁରଙ୍କ ମୁକ୍ତିଶିଳାକୁ ରୂପାନ୍ତର ଘଟଣାଠାରୁ ସବୁ ପାପୀ ଯେ ତାକୁ ଛୁଇଁ ମୋକ୍ଷ ହେଉଛନ୍ତି ସେ ବିଷୟ ଜଣାଇଲେ । ତାହା ଶୁଣି ଯମଙ୍କର ରାଗ ବଢ଼ିଲା । ସେ ଶାଗୁଣା ପିଠିରେ ବସିଯାଇ ବ୍ରହ୍ମାଙ୍କ ପାଖରେ ଜଣାଇଲେ । ବ୍ରହ୍ମା କହିଲେ ମୁକ୍ତିଶିଳା ହେଉ କୁମେ ସଦ୍ୟ ଗୋବର ପିଣ୍ଡୁଳା ପରି ଗୋବର ଗୋଡ଼ ଟିକେ ବସୁଛ ତା’ ହେଲେ ସେଇ ମୁକ୍ତିଶିଳାକୁ ସେଠୁ ଉଠାଇ ଆଣ । ତେବେ ଯାହା ହବ ଦେଖିବା । ବିଧାତା ବିଧାନ ହେବାରୁ ଯମ ଆସି ସେଇଲାଗେ ମୋକ୍ଷଶିଳାକୁ ଉଠେଇ ନେଇ ତାଙ୍କୁ ନେଇ ପୁଚ ଜଙ୍ଗଲରେ ଥୋଇଦେଲେ । ତେଣେ ପୁଲହ ଋଷି ମୁଜ ପଚେ ବସି ତପ କରୁଥିଲେ । ମୁକ୍ତିଶିଳାକୁ ନେଇଥିବାରୁ ସେ ପଚ୍ଛ ପଚେ ଯାଇ ବ୍ରହ୍ମାଙ୍କ ପାଖରେ ଫେରାଦ ହେଲେ । ବ୍ରହ୍ମାଙ୍କ ପାଖରେ ତ ସେତେବେଳେ ଦୁର୍ନୀତି ଅଭିଯୋଗର ଅସୁମାରୀ ଫାଇଲ ଜମା ହେଲାଣି । ଆଠଟା ଆଖିରେ ଦେଖି ବି ଶେଷ କରିପାରୁ ନାହାନ୍ତି । ଋଷିଙ୍କ ବିଚାର କରିବାକୁ ତର କାହିଁ ? ସେ ପୁଲହଙ୍କୁ କହିଲେ, ତୁମେ ଅଧା ବାଟରେ ବସିଥା । ପରେ ଦେଖାଯିବ । ସେଇଠୁ ପୁଲହ ଋଷି ଆସି ଅଧାସ୍ୱର୍ଗରେ ସପ୍ତଋଷିଙ୍କ ମେଳରେ ତାରକାପରି ବସି ରହିଲେ । ତେବେଣ ସ୍ୱର୍ଗପୁର ତପସ୍ୟା

ବନରେ ଦେବତାଙ୍କୁ ଭକ୍ତି କରିବାରୁ ତାଙ୍କ ବକ୍ଷସ୍ଥଳରେ ପୁଣି ବ୍ରହ୍ମାଙ୍କ ପାଦରେ ଅନୁଯୋଗ କଲେ ।

ବ୍ରହ୍ମା ତ ସବୁ ସୃଷ୍ଟି କରିଛନ୍ତି, କରିବେ ଅଉ କ'ଣ ? ହଂସଟି ମିଳିଲେ ଦେବ ଗୋଟିଏ ଗୋଟିଏ ଆସି ଗୟାସୁରର ପାଖରେ ପହଞ୍ଚି ତା' ଉପରେ ଯାଗ କରିବାପାଇଁ ତା'ର ମତାମତ ମାଗିଲେ । ଗୟା ରାଜି ହେବାରୁ ସେଇଠି ତାକୁ ଶୁଆଇ ଯମାଳୟରୁ ମୋକ୍ଷଶିଳାକୁ ଆଣି ତା' ଉପରେ ଥୋଇ ଦେବାରୁ ଗୟାସୁର ପଥର ହୋଇ ସେଇଠାରେ ମୋକ୍ଷଲାଭ କଲା । ତେଣୁ ସର୍ଜ୍ଜି ଯମ-ପୁରରୁ ମୁକ୍ତିଶିଳା ଆସି ସେହି ଯୁଗରୁ ଯେ ଗୟା କ୍ଷେତ୍ରର ଲାଗି ଏଇଠି ପହଞ୍ଚିଲା ଅଛି ସ୍ୱର୍ଗ ଯାଇପାରିନ୍ତି ନାହିଁ । ତେତିଶକୋଟି ଦେବତା ଓ ଗଦାଧରଙ୍କ ଅଂଶ ନେଇ ସେଇଠି ସେ ରହୁଛି, ସେଇଠି ଲୋକମାନେ ପିଣ୍ଡଦାନ ଦେଇ ପିତୃଗଣଙ୍କୁ ଉଦ୍ଧାର କରୁଛନ୍ତି । ତଣ୍ଡୁ ଧୁଳି ବ ସ୍ୱର୍ଗକୁ ଯାଇ ନ ପାରି ଅଧାସ୍ୱର୍ଗରେ ରହିଛନ୍ତି । ଏବେ ବୁଝିଲୁରେ ଅବୋଲକର ! ତ୍ରେତା ଯୁଗରେ ଏଇଠି ମୁକ୍ତିଶିଳା ଥିଲା ବୋଲି ଏ ଜାଗାର ନାମ ମୁକ୍ତିଶିଳା ହୋଇଅଛି । ଗତ୍ୟାନ୍ତରେ ମୁକ୍ତିଶିଳା ବଦଳ ହେବାରୁ ମୋକ୍ଷଶିଳା ହୋଇଯାଇଛି । ଏଠା ଜଣେ ଗୋସେଇଁ ଭୋଜନର ଆୟୋଜନ କଲେ । ଏ ଗଳ୍ପଟି ମୋ ମାମୁଁ ଗୁରୁପ୍ରସାଦ ଦାସ ପଞ୍ଚତୀର୍ଥ ଚାରିଧାମ ବୁଲିଆସି ଆମ ପାଖରେ କହୁଥିଲେ ।

କାହାଣୀ ତୃତୀୟ ଭାଗ ଏଇଠାରେ ଶେଷ
ପାଠକେ କ୍ଷମା କରିବ ଲେଖା ତ୍ରୁଟି ଦୋଷ ।
ଚତୁର୍ଥ ଭାଗ କାହାଣୀ ହୋଇବ ପୂରଣ
କହେ କଥା ଶଙ୍କର ଅଭୟ ଚରଣେ ।

—*—

ମୁଦ୍ରଣ - କଲ୍ୟାଣୀ ଆର୍ଟ ପ୍ରେସ, ଷ୍ଟେସନ ବଜାର, କଟକ-୨